# ପ୍ରଥମ ବର୍ଗ:
## ଚନ୍ଦ୍ରଶେଖର ରଥଙ୍କର ଶ୍ରେଷ୍ଠ ରଚନା



ସୃଜନାତ୍ମକ ଗଦ୍ୟ ପାଇଁ ଚନ୍ଦ୍ରଶେଖର ରଥ ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧ । ସ୍ୱୟଂ ରଚୟିତାଙ୍କ ଦ୍ୱାରା ମନୋନୀତ ତାଙ୍କର ସର୍ବଶ୍ରେଷ୍ଠ ରଚନାର ଏହି ଚୟନ : 'ବର୍ଣ୍ଣମାଳା' ଆନୁକୂଲ୍ୟରେ ଏକ ପ୍ରଥମ ବର୍ଗର ସାରସ୍ୱତ ଅବଦାନ ।

ବର୍ଣ୍ଣମାଳା

prathama varga : chandrasekhara rathankara shresthha rachana (creative essays) by chandrasekhar rath, published and printed (at printocraft, sambalpur) by varnamala, commissioner's bungalow, sambalpur. first edition: 1989.

rupees twenty only



## ଆଦ୍ୟକଥନ:

ମୋର ଉଲଙ୍ଗ ବିବସ୍ତ୍ରର ପ୍ରତିଚ୍ଛବି(5)

## ରଚନାକ୍ରମ:

ପ୍ରସ୍ତାର ସ୍ୱୀକାର(୯) ଅଶ୍ରୁତ ସ୍ୱର(16) ଫଗୁଣ(22) ଅଧାର(27) ମଥୁରା ନଗରୀ(34) ମଧୁ ଉଧାନ(3୯) ଦେବକୀ(45) ଦୁଇଟି ଚିଠି(50) କବିପତ୍ନୀ(5୯) ତୁଙ୍ଗତାମ୍(66) ମୁଁ ଏକ ପାଦପ(72) ମୁଁ ସତ୍ୟେଧର୍ମୀ କହୁଛି(77) ଖର୍ବପୁରୁଷ(୮୬) ଯୋଗାତରେଷୁ(୯4) ଅଜ୍ଞାତବାସ(103) ମୌନ(10୮) ନୀଡାସ୍ତୃତନ(114)



## ମୋର ସମ୍ଭାବ୍ୟ ବିକଳ୍ପର ପ୍ରତିଚ୍ଛବି

ମନେହେଉଛି ଚତୁଃତ ହିସାବ ନିକାସ ବେଳ ବୋଧହୁଏ ପାଖେଇ ଆସିଲା । ନହେଲେ କେତେକ ରଚନାକୁ ଅଗ୍ରାଧିକାର ଦେଇ ଏ ଦଲିଲ୍ ଲେଖିବାକୁ ମୋତେ କାହିଁକି କୁହାଯାଇଥାନ୍ତା, ମୁଁ ବା କାହିଁକି ରାଜି ହୋଇଯାଇଥାନ୍ତି ଉଦ୍‌ବିଗ୍ନ ହେଲାପରି ? ଆଗକୁ ଆଉ ଏ ଡାଳରେ ଫଳିବାର ନାହିଁ ବୋଲି ବୋଧହୁଏ ଉଭୟପକ୍ଷ ଜାଣିଯାଇଛନ୍ତି । ଫଗୁଣରୁ ଏବଂ ଶରତରୁ ସମପରିମାଣରେ ବିତସ୍ପୃହ ହୋଇ ଆସୁଥିବା ଏ ଗଛମୂଳେ ଠିଆହୋଇ ଏଣିକି ବୋଧହୁଏ ତା'ର ଆତ୍ମଚରିତ ଶୁଣା ଯାଇପାରେ, ମନେ ପକାଯାଇପାରେ କେଉଁ ଋତୁରେ କେତେ ଫୁଲ ଫଳ ଏ ଡାଳମାନଙ୍କରୁ ଜନ୍ମିଛନ୍ତି, ତା'ର ବୟାନ୍ ବି ଶୁଣା-ଯାଇପାରେ । ଏହିପରି ଏକ ସମୟ ଆସିଛି ବୋଲି 'ବର୍ଣମାଳା' ପକ୍ଷରୁ ମୋର ରଚନାମାନଙ୍କର ଏକ ବିଶିଷ୍ଟ ସଙ୍କଳନ ପାଇଁ ଅନୁରୋଧ ଏବଂ

ସେଥିପାଇଁ ମୋର ଏ ଢମାନକଦି । ବର୍ଣ୍ଣମାଳାର ଶ୍ରଦ୍ଧା ଏବଂ ଆଗ୍ରହ ପ୍ରକାଶ ପାଇନଥିଲେ ଏଭଳି ଏକ ସଙ୍କଳନର ସଂଭାବନା ନଥିଲା ।

ନିଜ ଲେଖା ହେଉ ପଛେ, ସେମାନଙ୍କ ଗହଳି ଭିତରୁ କେତୋଟି ବାଛି ଆଉ ବାକି ସମସ୍ତଙ୍କୁ ପଛୁ କରିଦେବା ଏକ ଘୋର ନିର୍ମମ କର୍ମ । ସେଥିପାଇଁ କୌଣସି କୈଫିୟତ୍ ଯଥେଷ୍ଟ ନୁହେଁ । ଯେଉଁ ଶତାଧିକ ରଚନା ମାନଙ୍କୁ ମୁଁ ଏ ବିଶିଷ୍ଟ ସଙ୍କଳନରେ ନେଇ ନାହିଁ, ସେମାନଙ୍କୁ ମୁଁ ଭଲ ଭାବରେ ଜାଣେ, ସେମାନେ ବି ମୋତେ ଜାଣନ୍ତି । ସେମାନେ ମୋତେ ଚାହିଁ ରହିବା ହିଁ ମୋ ପାଇଁ ଏକ ନୀରବ ଭର୍ତ୍ସନା । "ତମେ ଯେମିତି ଗଢ଼ିଲ ଆମେ ସେମିତି ଗଢ଼ିହେଲୁ । ବାହାଠାରୁ କୌଣସି ଗୁଣରେ ନ୍ୟୂନ ହେବା ଆମ ଇଚ୍ଛା ନୁହେଁ, ତୁମ ଇଚ୍ଛା । ମୂଳରୁ ସେଇ କେତେ ଗଡ଼ିଙ୍କୁ ଅଧିକ ସ୍ନେହରେ ଲାଳନ କରିବାର ଆମେ ଦେଖୁଥିଲୁ । ଏବେବି ସେଇମାନଙ୍କୁ ମୁଣ୍ଡରେ ଧରି ବୁଲୁଛୁ । ତୁମ ସାର୍ବଭୌମ ମର୍ଜି ଉପରେ ତ' ପ୍ରଶ୍ନ ନାହିଁ । ତେବେ ଆମର ଧାରଣା ଯେ ତୁମେ ଜାଣି ଶୁଣି ଆମ ଭଳି ବଡ଼ ଭାଗ ସୃଷ୍ଟିକୁ ଦଣ୍ଡ ଦେବା-ପାଇଁ ଗଢ଼ିଥାଅ । ଆମେ ସେକଥା ବୁଝୁ ଏବଂ ତୁମର ସେ ଇଚ୍ଛା ପୂରଣ କରିବାରେ ଦଣ୍ଡ ସହିବାକୁ ପ୍ରସ୍ତୁତ ଆଉ । ଆମର ସବୁଠାରୁ ବଡ଼ ଦୁଃଖ ହେଲା ଦଣ୍ଡ ନୁହେଁ, ଅବହେଳା । ଅପତ୍ୟ ସ୍ୱୀକାର କଲେ ଦଣ୍ଡ ମଧ୍ୟ ସ୍ନେହ ବଶାତ୍ ହୋଇପାରେ । କିନ୍ତୁ କ'ଣ ଅବହେଳାରେ ଅପତ୍ୟଙ୍କୁ ଅସ୍ୱୀକାର କରାଯାଏ? ତୁମେ ଆମକୁ ଅସ୍ୱୀକାର କରିବା—କିମ୍ବା ସ୍ୱୀକାର କରିବାପାଇଁ ଲଜ୍ଜାବୋଧ କରିବା, ଅସମ୍ମାନିତ ବୋଧ କରିବା, ଆମପାଇଁ ସବୁଠାରୁ ଚରମ ଅପମାନ । ତୁମେ ବରଂ ସ୍ପଷ୍ଟ କହିଦିଅ ଯେ ଆମେ ତୁମର ନୋହୁ, ଆଉ କାହାର, ତାହାବି ଆମ ସକାଶେ ଗ୍ରହଣୀୟ । କିନ୍ତୁ ଏଭଳି ପକ୍ଷପାତିତାର କୌଣସି ଯଥାର୍ଥ ଯୁକ୍ତି ନାହିଁ ।"

ମୁଁ ସ୍ୱୀକାର କରୁଛି କୌଣସି ଯୁକ୍ତି ନାହିଁ, କାରଣ ପ୍ରତ୍ୟେକ ସୃଷ୍ଟି ଅନନ୍ୟ ଏବଂ ସ୍ୱତନ୍ତ୍ର । ତଥାପି ବେଳେବେଳେ ଗୋଟାଏ ବିଶିଷ୍ଟ ଗୁଣ ଏକାଧିକ କ୍ଷେତ୍ରରେ ଲକ୍ଷ୍ୟକରି ସେଗୁଡ଼ିକୁ ଗୋଟିଏ ସୂତ୍ରରେ ବାନ୍ଧିବାର ପ୍ରୟୋଜନ ଦେଖାଦିଏ । ଏ କ୍ଷେତ୍ରରେ ସେଇଭଳି ଏକ ପରିସ୍ଥିତି ଉପୁଜିଛି ।

ଏ ବିଶେଷ ସଙ୍କଳନର ଲେଖାଗୁଡ଼ିକରେ ସାଧାରଣ ଲକ୍ଷଣ ହେଲା କାରୁଣ୍ୟ ଏବଂ କ୍ଷୋଭ ; ହୋଇପାରେ କ୍ଷୋଭଜନିତ କାରୁଣ୍ୟ । ବେଳେବେଳେ କ୍ଷୋଭରୁ

କ୍ରୋଧ ମଧ୍ୟ ଦେଖାଦେଇଛି ,କିନ୍ତୁ ଅପାରଗତାର କ୍ରୋଧ ଖୁବ୍ କରୁଣ । ଶବ୍ଦରେ ବାକ୍ୟରେ କଠୋର ସ୍ପଷ୍ଟତା । ଅର୍ଥ ନୂତନ ଉତ୍ତାପ ସୃଷ୍ଟି କଲାଭଳି ବ୍ୟଞ୍ଜନା ଆସିଯାଇଛି । ମୁଁ ଏମାନଙ୍କୁ ଲେଖୁଲାବେଳେ ଯେଉଁ ଆଲୋଡ଼ନ ଅନୁଭବ କରିଥିଲି ଏମାନେ ପ୍ରାୟ ସେଇ ଆଲୋଡ଼ନ ଏବେବି ସଞ୍ଚାର କରୁଛନ୍ତି । ସେଇ କାରଣରୁ ଏମାନଙ୍କ ସୃଷ୍ଟିରେ ଗୋଟାଏ ପ୍ରକାର ସାଫଲ୍ୟ ,କିଛି ମାତ୍ରାରେ ପରିପୂର୍ଣ୍ଣତାର ସନ୍ତୋଷ ଆସି ଯାଇଛି ,ସଫାନ ମକୁରରେ ନିଜର ପ୍ରତିବିମ୍ବ ଦେଖିଲାପରି ।

ସବୁ ଲେଖାରେ ମୋ ଜୀବନର ଖୁବ୍ ଗଭୀରରୁ କିଛି ବିଶ୍ୱାସ କିଛି ସ୍ୱପ୍ନ କିଛି ଅନୁଭବ ପ୍ରକାଶ ପାଇଯାଇଛି । ସତ୍ୟଧର୍ମୀ ସକ୍ରେଟିସ୍‌ଙ୍କ ଠାରୁ ଆରମ୍ଭ କରି ତାଳଚେର ଅଞ୍ଚଳରେ ସନ୍ଥମାନଙ୍କ ସହିତ ଆଳାପ ପରିଚୟ କରୁଥିବା ସେ ଅସ୍ୱାଭାବିକ ମଣିଷଟି ପର୍ଯ୍ୟନ୍ତ ସମସ୍ତେ ମୋ ମହାଦେଶର ଇଲାକା । ସମସ୍ତଙ୍କ ପ୍ରାଣ ମୋ ପ୍ରାଣ : ସମସ୍ତଙ୍କର ଭାବ ଅନୁଭବ ଓ ଭାଷା ମୋର ଫଲାକ୍ୟ ବିକଳ୍ପର ପ୍ରତିଚ୍ଛବି । ତଥାପି ବେଳେବେଳେ ମୋତେ ଲୋକେ ବୁଝି ପାରନ୍ତି ନାହିଁ । ସେଥିପାଇଁ ଗ୍ରହଣ ମଧ୍ୟ କରିପାରନ୍ତି ନାହିଁ । ସେମିତି ମୋ ଲେଖା । ତାକୁ କିଏ କେମିତି ଗ୍ରହଣ କରନ୍ତି । 'ଖର୍ବପୁରୁଷ' ଲେଖିଲା ପରେ ଭାବିଥିଲି ଯେ ପ୍ରତ୍ୟେକ ପାଠକ ବିଦ୍ରୋହ କରିବ ,ମୋତେ କୈଫିୟତ୍ ମାଗିବ ସେଭଳି ଅପମାନଜନକ ବାକ୍ୟ ପ୍ରୟୋଗ କରିଥିବାରୁ : କିନ୍ତୁ ହେଲା ଠିକ୍ ଓଲଟା । ମୁଁ ସେମାନଙ୍କୁ ସେମାନଙ୍କ ପରିବାର ,ସମାଜ ,ରାଷ୍ଟ୍ର ସମସ୍ତଙ୍କୁ ଭର୍ତ୍ସନା କରିଛି—କିନ୍ତୁ ମୋତେ ସେମାନେ ସମ୍ବର୍ଦ୍ଧିତ କରିଛନ୍ତି । ସେଥିରେ ମୁଁ ଦୁଃଖରେ ମ୍ରିୟମାଣ ହୋଇଯାଇଛି । ଅମର୍ଷବାଣୀ ଯଦି ଉତ୍ତେଜିତ କରି ନପାରିଲା ତାହା ଉଭୟ ପାଠକ ଏବଂ ଲେଖକର ବୈଫଲ୍ୟ । ବଡ଼ ବିଚିତ୍ର ଏ ଦ୍ୱୈତ ସମ୍ପର୍କ—ଏକ ପ୍ରକାର ଜଟିଳ ଦାମ୍ପତ୍ୟ ପରି । ରୁଷା ଦୁସାର କୌଣସି ନିର୍ଦ୍ଦିଷ୍ଟ କାରଣ ଖୋଜିଲେ ମିଳେନାହିଁ । କିନ୍ତୁ ଖୁବ୍ ଗଭୀରରେ ଗୋଟାଏ ପ୍ରକାର ପରସ୍ପର ପ୍ରତି ସ୍ନେହ ପ୍ରବଣତା ହିଁ ଏ ସମସ୍ତ ବିଚିତ୍ର ଆଚରଣ ପାଇଁ ଦାୟୀ । ମୁଁ ଭାବିଛି ଯେ ଏ ଲେଖାଗୁଡ଼ିକ ଶାଖା ଶୀର୍ଷରୁ ତୋଳି ମୁଁ ଏକାଠି ଏକ ନୂତନ ପୁଷ୍ପ ଗୁଚ୍ଛର ବିନ୍ୟାସ କରିଛି । କିନ୍ତୁ ଆର-ପକ୍ଷ ତାକୁ କେମିତି ବୁଝିବେ କେଜାଣି । ସେ ପର୍ଯ୍ୟନ୍ତ ଆଶା ଆକାଂକ୍ଷାକୁ ଯୁଗପତ୍ ଧାରଣ କରି ଅପେକ୍ଷା କରୁଛି ।

ଚନ୍ଦ୍ରଶେଖର ରଥ

# ସ୍ରଷ୍ଟାର ସ୍ୱୀକାର

ଆଦ୍ୟ ଆଷାଢ଼ରେ ମଣିଷକୁ ବୋଧହୁଏ ଗଛ ଭଳି ଲାଗେ । ଭିତରୁ ଗୋଟାଏ ପ୍ରକାର ତରଳ ଆଲୋଡ଼ନ ନୂଆ ପତ୍ର, କଢ଼ ଓ ଫୁଲରେ ଉଚ୍ଛୁଳି ବୋହିଯିବା ପାଇଁ ଉତୁରି ଆସେ । ମେଘ ସାଂଗେ ଦୋସ୍ତି କରି କଥା କହିବାକୁ ଇଚ୍ଛା ହୁଏ । କଦଂବ ଭାରରେ ମନର ଡାଳ ସବୁ ନଇଁଯାଏ । ଟିକିଏ ଉଦାସ ମଧ୍ୟ ଲାଗେ ଆନମନା ବସି ନଖରେ ଭୂଇଁ ଚିରିବାକୁ ମନ ହୁଏ । ପ୍ରଥମ ବର୍ଷାର ଧାରାପାତରେ ଶୁଷ୍କସ୍ନାତା ପୃଥିବୀ ପରି ପ୍ରାଣର ଆବେଗ କେନ୍ଦ୍ରରେ ଉଚ୍ଚାଟ ଧରେ, କିଛି ନୂତନର ସୃଜନ ପାଇଁ । ଶ୍ରାବଣର ଫେନାୟିତ ଆବେଗ ସ୍ରୋତକୁ ରୋଧି ରଖିବା ସଂଭବ ନୁହେଁ । ତାକୁ ଧାର କାଟି ବାଟ ଦେଖେଇ ନ ଦେଲେ ମନପ୍ରାଣ ସବୁ ବନ୍ୟାରେ ବୁଡ଼ିଯିବ । ଅଗତ୍ୟା ସେଦିନ ଭାରି ଚିକ୍କଣ, ନରମ କଳାଭଉଁର ମାଟି କିଛି ଟେବୁଲ୍ ଉପରେ ରଖି ବସିଗଲି । ବାହାରେ ମେଘ ନଇଁ ଆସିଥାଏ ।

କେନ୍ଦ୍ରୀଭୂତ ଇଚ୍ଛା ଶକ୍ତି ନେଇ ମୁଁ ବସିଲି ନିର୍ମାତାର ଆସନରେ । ଛଂଦହୀନ ବିଶୃଂଖଳ ମେଣ୍ଟାଏ ବସ୍ତୁକୁ ମୁଁ ରୂପ ଦେବି, ତା'ର ରୂପହୀନ ପିଣ୍ଡରେ ସୁକୁମାର ଛଂଦ ଆଣିଦେବି, ତାର ନୀରବ ତନ୍ତ୍ରୀରେ ମୂର୍ଚ୍ଛନା ଆଣିଦେବି । ସେ ସମୟରେ ମୁଁ ଯେ ବିଶେଷ କିଛି ଚିଂତା କରୁଥିଲି ତା ନୁହେଁ; ବରଂ ଗୋଟାଏ ତନ୍ମୟ ବିଭୋର ଭାବ ନେଇ ମୁଁ ବସିଥାଏ । କୌଣସି ମାନସିକ ପ୍ରକ୍ରିୟା ପରିବର୍ତ୍ତେ କେମିତି ଗୋଟାଏ ଉଚ୍ଛୁଳିଲା ଭଳି ଅନୁଭୂତି ଆସୁଥାଏ । ସେଇଟା ଠିକ୍ ଆନଂଦ ବୋଧହୁଏ ନୁହେଁ, କାହିଁକି ନା ମୁଁ ଅନୁଭବ କରୁଥାଏ ମୋର ସଂକଳ୍ପର ଦୃଢ଼ତା ଏବଂ ଗହୀରିଆ ଗୋଟାଏ ଅସ୍ଥିରତା ଓ ପୀଡ଼ା ! ମିଠା ଖଟା ମିଶି ବଡ଼ ବିଚିତ୍ର ଅନୁଭୂତି ।

ସେତେବେଳେ ସେଇ ମାଟିଗୁଳାଟିର ବିନିମୟରେ ମୋତେ ଯାହା କିଛି ଯାଚିଥିଲେ ମୁଁ ନେଇ ନ ଥାଂତି । ତା' ଭିତରେ ମୋର ଅସଂଖ୍ୟ ସ୍ୱପ୍ନ ଲହଡ଼ି ମାରୁଥିବା ମୁଁ ଦେଖୁଥାଏ । କିଛି ଗୋଟାଏ ହେବାର ଅସୀମ ସଂଭାବନା ତାକୁ ପ୍ରକୃତିର ଉଦାରତା ଦେଇଥାଏ । ସେ ପୁରୁଷକୁ ଆହ୍ୱାନ କରୁଥାଏ ତା'ର ଅରୂପ ଇଚ୍ଛାଶକ୍ତିକୁ ପ୍ରକାଶ କରିବାକୁ, ରୂପାୟିତ କରିବାକୁ । ସେ ସମୟରେ କେବଳ ଏକ ପ୍ରଗାଢ଼ ମୋହ ମୁଁ ଅନୁଭବ କରୁଥାଏ । ନରମ, ଚିକ୍କଣ, କାକର

ମାଟିପିଣ୍ଡଟି ପ୍ରତି ମୋର ମମତା ଅଗାଧ । ମୋ ଶରୀରରୁ ଉତ୍ତାପ କ୍ରମଶଃ ତା'ଭିତରକୁ କ୍ଷରିତ ହୋଇଯିବାର ମୁଁ ଅନୁଭବ କଲି । ପ୍ରଗାଢ଼ ସାନ୍ନିଧ୍ୟ ହେତୁରୁ ମୋର ହୃତ୍‌ପିଣ୍ଡର ସ୍ପନ୍ଦନ ତାକୁ ଦୋହଲାଇ ଦେବାର ମଧ୍ୟ ଅନୁଭବ କଲି । କିନ୍ତୁ କୌଣସି ମୁହୂର୍ତ୍ତରେ ବୋଧହୁଏ ସେଇ ମୌଳିକ ବ୍ୟବ– ଧାନଟିକୁ ମୁଁ ଭୁଲି ପାରିଲି ନାହିଁ—ମୋର ଖୁବ୍ ଆଦରର ମାଟିପିଣ୍ଡଟି, କିନ୍ତୁ ମୁଁ ତା'ଠାରୁ ଭିନ୍ନ !

କିଛି ସମୟ ପାଇଁ ଟେବୁଲ୍ ଉପରେ ତାକୁ ମୁଁ ବିଭିନ୍ନ ଦିଗରୁ ଚାହିଁଲି । ଅଗଣିତ ତରଳ ସମ୍ଭାବନାର ଛାଇ ପରି ଆଭାସ ତା'ଉପରେ ଭାସି ବୁଲିବାର ମୁଁ ଦେଖିଲି । କ୍ରମଶଃ ଏ ସ୍ୱପ୍ନର କୁହୁଡ଼ି ଉପରେ ହିଁ ମୋର ଦୃଷ୍ଟି ଆବଦ୍ଧ ରହିଗଲା । ମୋ ସମ୍ମୁଖରେ ଯେ ମାଟିପିଣ୍ଡଟିକୁ ମୁଁ ଆଉ ଦେଖିପାରୁ ନ ଥିଲି । ତା'ସାଙ୍ଗେ ସାଙ୍ଗେ ମୋର ଶରୀର ମଧ୍ୟ କ୍ରମେ ଅବଶ, ନିଷ୍ପ୍ରାଣ ହେବାକୁ ଲାଗିଲା । ଦୃଷ୍ଟିହୀନ ଆଖିରେ ମୁଁ କେବଳ ଶୂନ୍ୟକୁ ଅନାଇଁ ରହି– ଥାଏ । ମୃତପ୍ରାୟ ଶରୀରରୁ ମୋର ସୂକ୍ଷ୍ମ ପୁରୁଷ ସତେ ବା ଉଦ୍‌ଗତ ହୋଇ ଭାସି ଆସିଛି, ଏବଂ ସେଇ ସ୍ୱପ୍ନର କୁହୁଡ଼ିରେ ପହଁରି ବୁଲୁଛି । ସହସ୍ରାଧିକ ଗୋପାଙ୍ଗନା ସହିତ ଏ ରାସ ବିହାର ଭିତରେ କେବଳ କେଉଁଠି ସଂସାର ଗନ୍ଧ, ଚିକୁରର ସ୍ପର୍ଶ ବା ଆଲିଙ୍ଗନର ଇଙ୍ଗିତ ମାତ୍ର ଅନୁଭବ କରୁଛି । ସମ୍ପର୍କରେ କେଉଁଠି ହେଲେ ନିବିଡ଼ତା ନାହିଁ । ପ୍ରତ୍ୟେକ ତରଙ୍ଗରୁ ଆହ୍ୱାନ ଆସୁଛି, ପ୍ରତ୍ୟେକ ଥର ମିଳନର ଉତ୍କଣ୍ଠା ଓ ଆଗ୍ରହ ଜାଗ୍ରତ ହେଉଛି, କିନ୍ତୁ କିଛି ହେବା ପୂର୍ବରୁ ରୂପର ଛାୟା ଲାବଣ୍ୟର ତରଙ୍ଗ, ସ୍ମୃତିର ଗନ୍ଧ ସବୁ ଶୂନ୍ୟରେ ମିଳେଇ ଯାଉଛି ! ପୁଣି ଦୁର୍ବାର ଆହ୍ୱାନ, ପୁଣି ମିଳନର ଚେଷ୍ଟା । ଏପରି ଅର୍ବୁଦ ଲୁଚକାଳି ଖେଳ ଭିତରେ ଘନୀଭୂତ ଆଲୋକ ଏକ ଅପୂର୍ବ ରୂପ ନେଇ ଠିଆ ହେଲା । ରୂପରେଖାର ସେତେ ଆଉ ଅସ୍ଥିରତା ନାହିଁ, ସୁକୁମାର ଚନ୍ଦ୍ରିକାରେ ରେଶମୀ ଢେଉ ପରି ସାମାନ୍ୟ ମୃଦୁ କମ୍ପନ ଘଟୁଛି ଯେ ଏ ମଧ୍ୟ ସେଇ ସ୍ୱପ୍ନର ରୂପାନ୍ତର । କିନ୍ତୁ ଏହାର ସ୍ଥିର ଆହ୍ୱାନ, ସ୍ଥିର ଲାବଣ୍ୟ ଅନୁ– ପେକ୍ଷ୍ୟ । ମୁଁ ଏହି ଗଢ଼ୁ କଟୀ, ନିର୍ମଳ ହ୍ରଦ ଓ ସମ୍ମୋହିନୀ ଆଶ୍ଳେଷରେ ଲୀନ ହୋଇଗଲି; ଚିବୁକ, ଅଧର, କପୋଳ, ଗ୍ରୀବା ଓ ବକ୍ଷର କୋମଳ ଉଷ୍ଣତା ଭିତରେ ମୁଁ ନିଜକୁ ହରାଇ ଦେଲି; ଚିକୁରଦାମର ସ୍ନିଗ୍ଧତା ଏବଂ ଜଘନର ମୃଦୁ ଶିହରଣ ମୋତେ ସମ୍ପୂର୍ଣ୍ଣ ଅଭିଭୂତ କରିଦେଲା । ମୁଁ ଅନ୍ୟ ଏକ ରାଜ୍ୟରେ ସୌନ୍ଦର୍ଯ୍ୟର ମଦିରା ଆକଣ୍ଠ ପାନ କରିଗଲି । ବିଭୋରତାର ଏକ ଉଚ୍ଚତର ପର୍ଯ୍ୟାୟ; କଳ୍ପନାର ଏକ ସୂକ୍ଷ୍ମ ବ୍ୟାପ୍ତି । କିଛି ସମୟ ପରେ ସ୍ୱତଃ

ମୁଁ ମୋର ଅସ୍ତିତ୍ୱ ଫେରି ପାଇଲି ଏବଂ କ୍ରମେ ଶରୀରର ଢ଼ଗଡକୁ ଫେରି ଆସିଲି । ଶିଥିଳିତ ଶ୍ୱାସକ୍ରିୟା ପୁନର୍ବାର ସ୍ୱାଭାବିକ ଗତିରେ ଚାଲିଲା ଏବଂ ମୁଁ ଦେଖିଲି ସେଇ ମାଟିପିଂଡଟି ପୂର୍ବପରି ଅପେକ୍ଷା କରି ରହିଛି ।

ମାନସ କ୍ଷେତ୍ରର ଚତୁଷ୍କୋଣ ଆଚ୍ଛାଦିତ କରି ସୁଷମାର ଝୀନ ତଂତୁ ପ୍ରସାରିତ ହୋଇ ରହିଥାଏ । ସ୍ମୃତିର ବିଳାପ ଏବଂ ମହାଯୋଗୀର ଆଳସ୍ୟ ଓ ଭ୍ରମକୁଠା ଆଣି ଦେଇଥାଏ । ବଡ଼ ସତର୍ପଣରେ କିଂତୁ ଇଚ୍ଛାଶକ୍ତି ଗୁପ୍ତ ମନ୍ତ୍ରଣା ଦେଲା ଯେ ମାନସସ୍ୱର୍ଗର ସୁରସୁନ୍ଦରୀଙ୍କୁ ମୃଣ୍ମୟୀ ବଂଦିନୀ କରାଯାଉ । ଏହି ଉଦ୍ଦେଶ୍ୟରେ ଯେତେବେଳେ ମୁଁ ପୁଣି ସ୍ମୃତିରାଜ୍ୟକୁ ଫେରିଯାଏ, ସ୍ୱପ୍ନର ପ୍ରତିମା ଚଂଚଳ ହୋଇ ଉଠିଛି । କୌଣସି ଅଙ୍ଗକୁ ନିରେଖି ଚାହିଁଲେ ଅବଚେତନାର ସହସ୍ର ସ୍ମୃତି ସେଥିରେ ଜଡ଼ିତ ରହିଛି । ମୋହିନୀ ମୂର୍ତ୍ତି ଛୁବିନ୍ନ ଶରତ୍ ସନ୍ଧ୍ୟା ପରି ଦେଖୁ ଦେଖୁ ନୂଆ ନୂଆ ରୂପରେ ପ୍ରତିଭାତ ହେଉଛି । ରୂପର ଏକକତ୍ୱ ଆଉ ନାହିଁ । ଏହା କେବଳ ମାନସିକ ଐଶ୍ୱର୍ଯ୍ୟ ରୂପେ ହିଁ ରହିଯିବ । ତାଙ୍କୁ ବସ୍ତୁଜଗତ୍‌କୁ ଆଣିବା ପ୍ରସ୍ତର ଗୌରବକୁ ମୂର୍ତ୍ତ କରିବା ଠାରୁ ଆହୁରି ଅସମ୍ଭବ । କାମହାସୀ ଅପରୂପ ଭଙ୍ଗୀରେ ମୋର ଦ୍ରବୀଭୂତ ପ୍ରାଣକୁ ଚଂଚଳ କରି ତୋଳୁଛି, ସହାନୁଭୂତିଶୀଳ ପ୍ରେରଣା ଯୋଗାଉଛି । ଏହାର ଫଳ ସ୍ୱରୂପ ଯେଉଁ ସଚେତନତା ଆସୁଛି ତା'ଭିତରେ ଏକ ବେଦନା ମୁଁ ଅନୁଭବ କରୁଛି । ପରିହାସମୟୀ ମୋରି ଆଶ୍ଳେଷ ଭିତରେ ହିଁ ମିଳେଇ ଯାଉଛି । ପାଇବା ହରେଇବାର ଯୁଗପତ୍ ହର୍ଷ ବିଷାଦ ଦ୍ୱଂଦ୍ୱ ସୃଷ୍ଟି କରୁଛି । ବେଳକୁ ବେଳ ମାନସୀ ପ୍ରତିମା ଅଧିକରୁ ଅଧିକତର ଲାବଣ୍ୟମୟୀ ଅଧିକରୁ ଅଧିକ କୁହୁକିନୀ ହୋଇ ମୋତେ ଅବଶ କରି ପକାଉଛି । ଇଚ୍ଛା ମଧ୍ୟ ସେହିପରି ତେଜି ଉଠୁଛି ତାଙ୍କୁ ନିଜର କରି ନେବାକୁ, ଧରି ରଖିବାକୁ । ବେଦନା ଆହୁରି ତୀବ୍ରତର ହୋଇ ଆସୁଛି । ଏହି ଅବସ୍ଥାରେ ସ୍ଥିର କଲି ଯେ, ସଜାଗ ହୋଇ ଲକ୍ଷ୍ୟ କଲେ ହୁଏତ ତାର କୌଣସି ଗୋଟିଏ ଶିଥିଳ ମୁହୂର୍ତ୍ତକୁ ଆୟତ୍ତ କରିହେବ । ତା' ପାଇଁ ପ୍ରସ୍ତୁତ ହୋଇ ଛଳନାମୟୀର ସନ୍ଧାନ କଲି । କିଂତୁ ସ୍ଥିର ଉଦ୍ଦେଶ୍ୟ ତା'ଆଗରେ ମାଟିର ଗୋଟିଏ ଖୋପ ନେଇ ସେଇଠି ପହଂଚିଥାଏ, ବିଚ୍ଛୁରିତ ଲାବଣ୍ୟ ସମୁହକୁ ସଂକଳିତ କରି ତା'ଭିତରେ ସମାହିତ କରିବ । ଅପେକ୍ଷା କରି ରହିଲି, ପ୍ରଣୟୀର ଆଶା ନୁହେଁ ବରଂ ଲୁବ୍ଧକର ଉତ୍‌କଂଠା ନେଇ ଯୁଗ ବିତିଗଲା ପରି ବୋଧହେଲା । ପରିଶେଷରେ କରୁଣାର କ୍ଷୀଣ ଧାରା ପରି ସୁଷମାର ଏକ ବସ୍ତ୍ରରେଖା ନଇଁ ଆସିଲା । ମାନସୀର ଏକ ସୂକ୍ଷ୍ମ ପ୍ରକାଶ । ମୃତ୍ତିକା ଗୌରବରେ ପରିଣତ ହେଲା । ସୂକ୍ଷ୍ମ ଘନୀଭୂତ ହୋଇ

ରୂପ ନେଲା ଅପୂର୍ବ ବର୍ଣ୍ଣର ତରଙ୍ଗ, ଅସଂଖ୍ୟ ବର୍ଣ୍ଣର କ୍ଷିପ୍ର କୁଣ୍ଡଳୀ ତରଳ ଇନ୍ଦ୍ରଧନୁର ରଙ୍ଗ ନେଲା । ପରିଶେଷରେ ଦୀପ୍ତିମାନ୍ ସ୍ୱର୍ଣ୍ଣାଭ ଏକ ଅପରୂପ ଛନ୍ଦ, ଏକ ନୃତ୍ୟରତା ସ୍ୱପ୍ନ ସୁନ୍ଦରୀର ଲାସ୍ୟ । ବିଜୁଳିର ଚମକ ପରି ମୁଁ ସେଥିରେ ମୁହୂର୍ତ୍ତକ ପାଇଁ ଦେଖିବାକୁ ପାଇଲି ମୋହିନୀର ମୃଣାଳ ବାହୁ ଏବଂ ରଜତଶୁଭ୍ର ହାସ୍ୟଛଟା । କିନ୍ତୁ ପର ମୁହୂର୍ତ୍ତରେ ଦେଖିଲି ମୃତ୍ତିକାର ସଦ୍ୟଜାତ ମୂର୍ତ୍ତିଟିଏ । ଇନ୍ଦ୍ରନୀଳର ସାଗରରେ ସୁବର୍ଣ୍ଣର ତରଣୀ, ହୀରକର ଆହୁଲା, ସବୁ ଯେମିତି ମୋଠାରୁ ଦୂରେଇ ଦୂରେଇ ଭାସିଗଲା । କଳ୍ପନାସୁନ୍ଦରୀ ସହିତ ମୋର କ୍ଷଣିକ ମିଳନ ପରେ ମୃତ୍ତିକାର ଏ ଶିଶୁଟି ସତେ ବା ବ୍ୟବଧାନ ସୃଷ୍ଟି କଲା । ଦିଗ୍‌ବଳୟରୁ ଦୃଷ୍ଟି ଫେରାଇ ଆଣି ମୁଁ ସେଇ ଅପ୍‌ସରା-ସନ୍ତାନକୁ ଚାହିଁଲି । ମମତାର ଡୋର ଭିଡ଼ି ଧରିଲା । ଆଦରରେ ତାକୁ ଗ୍ରହଣ କଲି, ତା'ର ପିତୃତ୍ୱ ସ୍ୱୀକାର କଲି । ସଙ୍କୁଚିତ ସ୍ନାୟୁରେ ଚେତନା ପ୍ରସାରିତ ହୋଇ ଇନ୍ଦ୍ରିୟର ରସକୂଳ ପର୍ଯ୍ୟନ୍ତ ଲହଡ଼ି ମାରିଗଲା । ଦେଖିଲି ସେହି ମାଟିପିଣ୍ଡଟି ଅପରି-ବର୍ତ୍ତିତ ଭାବରେ ଅପେକ୍ଷା କରି ରହିଛି ।

ମନ ଭିତରେ କଳ୍ପନାର ଶିଶୁ, ଆଖି ଆଗରେ ସ୍ଥୂଳ ମାଧ୍ୟମ । ହାତରେ ସତିଏ ସରୁ କରଣି । ମାଟିର ଧର୍ମ ଓ ହାତର ଦକ୍ଷତା ଉପରେ ଚେଷ୍ଟା ଚାଲିଲା ମନର ସାର ଉପରେ ମାଟିର ସାର ମିଶାଇ ଦେବାକୁ । ଖୁବ୍ ମନୋ-ଯୋଗ ଦେଇ କାଟିଗଲି, ବହିଗଲି । ସତେ ବା ଅଭିଶପ୍ତ ଅହଲ୍ୟାକୁ ପାଷାଣ-କାରାରୁ ମୁକ୍ତି ଦେଉଛି । ଯେତେ ମନ୍ଥର ଗତିରେ ମାଟି ରୂପ ନେଉଥାଏ, ଅନବଦ୍ୟ ଆନନ୍ଦ ଝରିଆସୁଥାଏ ରୂପର ଉନ୍ମେଷରୁ । କିନ୍ତୁ କଟୀତଟରେ କ୍ଷୀଣ ପରିଧେୟର ସୂକ୍ଷ୍ମରେଖା ଦେଲାବେଳେ ମୁଁ ଅନୁମାନ କଲି, ସତେ ଯେପରି ମୃତ୍ତିକା ଅବାଧ୍ୟ ହୋଇଉଠୁଛି । ତାର ବିକାଶ ଧାରା ମୋର କଳ୍ପନାର ସ୍ରୋତ ସହିତ ଏକମୁଖିନୀ ହେଉନାହିଁ । ମୃତ୍ତିକାର ଧର୍ମ ଏବଂ ସ୍ରଷ୍ଟାର ପାରଗତା ତାକୁ ଏକ ଅପ୍ରତ୍ୟାଶିତ ଦିଗରେ ରୂପାୟିତ କରୁଛନ୍ତି । ଗ୍ରୀବାର ଭଙ୍ଗୀ, ନର୍ତ୍ତକୀର ମୁଦ୍ରା, ଚାହାଁଣିର ଚାଞ୍ଚଲ୍ୟ ଦେଖି ମନେହେଲା ଯେପରି ଆଉ ଆସୌ ରୂପନେବେ ନାହିଁ । ପ୍ରକାଶ କରିବାର ସ୍ୱାଭାବିକ ଧର୍ମ କିନ୍ତୁ ପ୍ରୟାସରୁ ବିରତ ହେଉ ନ ଥାଏ । ଧ୍ରୁବତାରାକୁ ଲକ୍ଷ୍ୟ ରଖି ଗତି କଲେ ଏଇ କ୍ଷୁଦ୍ର ପୃଥିବୀଟିର ବକ୍ଷରେ ସ୍ୱତଃ ଯେପରି ଦେହପାତ ହୁଏ ସେହିପରି କଳ୍ପନାର ସୁଷମା ପ୍ରାଚୁର୍ଯ୍ୟକୁ ସମ୍ମୁଖରେ ରଖି ତା'ର ସାମାନ୍ୟ ଆଭାସ ମାତ୍ର ମୁଁ ପ୍ରକାଶ କରିବା ସଂଭବ ବୋଧ କରୁଥିଲି । ସୃଜନର ସୂକ୍ଷ୍ମ, ତୀବ୍ର ବେଦନା ଆନନ୍ଦର ରୂପାନ୍ତର ମାତ୍ର । ପ୍ରକୃତ-ରେ ତାହା ବୋଧହୁଏ ବେଦନା ଏବଂ ଆନନ୍ଦର ଯୋଗବିନ୍ଦୁ, ଯେଉଁଠି ଅନୁଭୂତିର

ଆଉ ପରିଚୟ ବା ପରିଭାଷା ନାହିଁ, ଯେଉଁଠି ଖୁବ୍ ଗଭୀରରେ ପାର୍ଥକ୍ୟର ବିଲୟ ହୋଇଯାଇଛି ।

ସ୍ୱା ଭିତରେ ପରିଚିତ ଭଦ୍ରଲୋକଟି ପଶବଦ ଘର ଭିତରକୁ ପଶି ଆସିଲେ । ସ୍ୱତ୍ପୋତ୍‌ଥିତବତ୍ କୌଣସି ପ୍ରକାର ଶିଷ୍ଟାଚାର ରକ୍ଷା କଲି । ସେ ବିଭିନ୍ନ ଦିଗରୁ ଥରେ ଦୁଇଥର ମୂର୍ତ୍ତିଟିକୁ ଚାହିଁ କହିଲେ, "ଆଚ୍ଛା! ହେଲା ଯେ, ହାତ-ଗଡ଼ାକରୁ ଅନେକ ମାଟି ଉଠିଯିବ । ଆଉ ଯଦି କଟୀରୁ ବାଁ ଆଡ଼କୁ ଦେହଟା ବଙ୍କେଇଯାଏ ଖୁବ୍ ସୁନ୍ଦର ଦିଶିବ । ମୁଣ୍ଡଟାକୁ ଡାହାଣ ଆଡ଼କୁ ମୋଡ଼ି ଦେଖନ୍ତୁ ନା କିପରି ଚମତ୍କାର ଦିଶୁଚି!" ଏହା କହି ମୁଁ କିଛି ଭାବିବା କିମ୍ବା କହିବା ପୂର୍ବରୁ ସେ ମୋଡ଼ି ଦେଲେ । ମୁଁ ଚିତ୍କାର କରି ଉଠିଥାଂତି; "କିଏ ଏ ବର୍ବର! ଅଯାଚିତ ଭାବରେ ଅନଧିକାର ଦୁର୍ବ୍ୟବହାର କରିବାର ଅଧିକାର ଏ ମୂର୍ଖ ପାଇଲା କେଉଁଠୁ!" ଯନ୍ତ୍ରଣା କିନ୍ତୁ ପ୍ରକାଶ ପାଇପାରିଲା ନାହିଁ । ତାଂକୁ ଡାକରା ହେବାରୁ ସେ ବାହାରକୁ ଚାଲିଗଲେ । ବହୁ କଷ୍ଟରେ କ୍ରୋଧର ବିସ୍ଫୋରଣକୁ ସଯତ ରଖି ଭାବିଲି—"ଏ ହିଁ ତ କଳାର ଗ୍ରାହକ, କଳାକାରର ପୃଷ୍ଠପୋଷକ, ଭୋଜରାଜାଂକର ପ୍ରତୀକ !—କଳା ବ୍ୟବସାୟର ଲକ୍ଷ୍ୟ ଏମାନଙ୍କର ସ୍ଥୂଳ ରୁଚିକୁ ସନ୍ତୁଷ୍ଟ କରିବା । ଏଇମାନେ କଳାର ବିଚାରକ, ନିନ୍ଦୁକ ଘାତକ!...ଦୁର୍ବଳ କଳାକାରଟିକୁ ନେଇ ଏଇମାନେ ମନଇଚ୍ଛା ଖେଳିଯାଂତି! କିନ୍ତୁ କଳା ଓ କଳାକାର ପରା କାଳଜୟୀ?"...

ବିକ୍ଷୁବ୍ଧ ମନ ନେଇ ଆଉ ସ୍ଥିର ବସି ହେଲା ନାହିଁ । ପ୍ରବଳ ଝଡ଼ବତାସରେ ସତେ ବା ସମଗ୍ର ଉଦ୍ୟାନ ଉଜୁଡ଼ିଯାଇଛି । କ୍ଷତବିକ୍ଷତ ମନ ରକ୍ତସ୍ରାବରେ ଝାଉଁଳି ପଡ଼ିଛି । ବଡ଼ ଶ୍ରାଂତ, ଦୁର୍ବଳ ବୋଧ କରୁଥିଲି । ଥକା ମାରି ବସିବା ପରେ କିଛି ସମୟ ମଣିଷର ମୂର୍ଖତା ପାଇଁ ଅଶ୍ରୁପାତ କଲି, କ୍ଷମା ପ୍ରାର୍ଥନା କଲି ।

ମୋର ଅଜାଣତରେ ପୁଣି ସୃଷ୍ଟିର ଉନ୍ମାଦନା କେତେବେଳେ ମୋତେ ଉଦେଇ ନେଇଗଲା । ମୁଁ ପୁଣି ମାଟିପିଣ୍ଡଟିକୁ ରୂପ ଦେବାରେ ମନ ଲଗେଇଲି! ମନେହେଲା ତାକୁ ରୂପ ଦେବା ଯେପରି ମୋର ସ୍ୱାଭାବିକ ଧର୍ମ ପ୍ରକାଶିତ ହେବା ସେପରି ତାର ଅନିବାର୍ଯ୍ୟ ଅଧିକାର । ସୃଜନର ପୀଡ଼ା ଉପଭୋଗ କରୁ କରୁ ମୋତେ ବୋଧହେଲା ଯେମିତି ଇଚ୍ଛାଶକ୍ତି ମୋର ହୋଇ ଆଉ ନାହିଁ; ବରଂ ପ୍ରାଣବନ୍ତ ମୂର୍ତ୍ତିଟି ମୋତେ ନିର୍ଦ୍ଦେଶ ଦେଉଛି, ମୋତେ ବାଧ୍ୟ

କରୁଛି, ଇଙ୍ଗିତରେ, ନୀରବ ଉନ୍ମନାରେ, ମାନିନୀ ପ୍ରେମିକାର ଅଭିମାନରେ । ମୁକୁରର ପ୍ରତିବିମ୍ବ ଯେପରି ଚରମ ପ୍ରାଣବନ୍ତ ହୋଇ ପ୍ରସାଧନରତା ତରୁଣୀକୁ ଇଙ୍ଗିତ ଦିଏ ଏବଂ ତାଙ୍କୁ ରୁଚିସମ୍ମତ ପରିପାଟୀରେ ସଜ୍ଜିତ କରିବା ଯେପରି ତା'ର କର୍ତ୍ତବ୍ୟ ହୋଇଉଠେ, ସେପରି ମୂର୍ତ୍ତିଟି ମୋର ମାନସୀ ମେନାର ପ୍ରତିବିମ୍ବ, ତାଙ୍କୁ ରୂପଦେବା ମୋର ଏକାନ୍ତ ଧର୍ମ ।

ଗଠନର ତନ୍ମୟତା ଭିତରେ ମୁଁ ସ୍ପଷ୍ଟ ଅନୁଭବ କଲି ଯେ ମୋ ଭିତରେ ଏବଂ ବାହାରେ ଏକ ମୂର୍ଚ୍ଛନା ଧ୍ୱନିତ ଓ ପ୍ରତିଧ୍ୱନିତ ହୋଇ ଖେଳି ବୁଲୁଛି । କେତେବେଳେ ତାହା ସ୍ଫୁରିତ ଚକିତ ଚନ୍ଦ୍ରିକାର ରଜତ ଜାଲରେ ସ୍ୱପ୍ନାବିଷ୍ଟ ଭାସିଆସୁଥିବା ସୁଦୂର ବଂଶୀତାନ, କେତେବେଳେ ବା ନିସ୍ତବ୍ଧ ରଜନୀରେ କୋହଭରା କୋକବିଳାପ, ଆଉ କେତେବେଳେ ବା ପଂଚମୀ ଜହ୍ନର ଆଲୁଅରେ ସ୍ନିଗ୍ଧା ଗିରିତଟିନୀର କୁଳୁକୁଳୁ ଧ୍ୱନି । ନୀରବତାର ସାଗରବେଳାରେ ଯକ୍ଷିଣୀର ଅଶରୀରୀ ଆତ୍ମା ଯେପରି ମୃଦୁ ମଧୁର ଝଙ୍କୃତ ହୋଇ ଭାସିଯାଉଛି । ସେ ମୂର୍ଚ୍ଛନାରେ ଅଛି ଅନୁନୟ, କାରୁଣ୍ୟ, ଏବ ଅଭିମାନମିଶା ଦୟାଭିକ୍ଷା, ସ୍ପଷ୍ଟ ଏବ ପ୍ରାର୍ଥନାଭରା ଇଙ୍ଗିତ । ମୂର୍ଚ୍ଛନାର ତରଙ୍ଗ, ମୂର୍ତ୍ତିର ରେଖା, କଳ୍ପନାର କମ୍ପନ ସବୁ ଏକାକାର ହୋଇଯାଉଛି ।

ସୃଷ୍ଟି ମୋର ବାଙ୍‌ମୟୀ ! ସ୍ରଷ୍ଟା ପାଖରେ ତାର କି ନିର୍ଦ୍ୱନ୍ଦ୍ୱ ଆତ୍ମସମର୍ପଣ, କି ଅଗାଧ ବିଶ୍ୱାସ, କି ଭକ୍ତିବିନମ୍ର ସମ୍ମାନ —ଏବଂ ତା ଭିତରେ ସ୍ରଷ୍ଟା ତଲ୍ଲୀନ କ୍ଷମାଶୀଳ, ଉଦାର—ସ୍ନେହ, ବାତ୍ସଲ୍ୟ ମମତାର ପ୍ଲାବନରେ ଜବୁଥବୁ ।

ଆୟୁଷ୍ମତୀ ସୌମ୍ୟା ସୃଷ୍ଟି ମୋ ସମ୍ମୁଖରେ ଲଜ୍ଜା ବିନମ୍ରା ଠିଆ ହୋଇଥାଏ । ପ୍ରାଣରେ ମୋର ପୂର୍ଣ୍ଣତାର ପ୍ଲାବନ ଆଶୀର୍ବାଦର ଧାରାରୂପେ ଝରିଆସୁଥାଏ । ଆନନ୍ଦ, ବିସ୍ମୟ ଓ ସମ୍ମାନର ସହିତ ମୁଁ ଚାହିଁ ରହିଲି । ସୃଷ୍ଟିର ପ୍ରତ୍ୟେକ କେନ୍ଦ୍ରରେ ଜୀବନର ସ୍ଫୁରଣ, ଚେତନାର ତରଙ୍ଗ ଖେଳି ଯାଉଛି । ମନେ ହେଲା, ସୃଷ୍ଟି କୃତଜ୍ଞତାରେ ମୋର ଜୟଗାନ କରୁଛି । ସେହି ଗାନର ଏକ ସ୍ୱାତନ୍ତ୍ର୍ୟ ଅଛି, ଏକ କ୍ରମବର୍ଦ୍ଧନଶୀଳ ଗାମ୍ଭୀର୍ଯ୍ୟ, ଗୁରୁତାର ଏକ ମାତ୍ରାରୋହଣ । କ୍ରମଶଃ ତାହା ଦୂର ସ୍ତନିତର ଗୁରୁ ନିନାଦ ପରି ପ୍ରତୀୟମାନ ହେଉଛି । ସୃଷ୍ଟି ତାର ମୃଦୁ ଶିହରଣରେ ପ୍ରତିଧ୍ୱନି କରୁଛି, ଲାସ୍ୟମୟୀ ଚଟୁଳ ହୋଇଉଠୁଛି । ତା'ପରେ କିନ୍ତୁ ଏ କି ପ୍ରଚଣ୍ଡ ଘୂର୍ଣ୍ଣନ ! ମନ୍ଦ୍ର ନିନାଦ ଗମ୍ଭୀରତର ଏବଂ ନର୍ତ୍ତନ ତୀବ୍ରତର, ଦ୍ରୁତତର ହୋଇ ଶେଷରେ ଶବ୍ଦର ତରଙ୍ଗରେ ସୃଷ୍ଟି ବିଭ୍ରାନ୍ତିତ

ବିକୀର୍ଣ୍ଣ ହୋଇପଡ଼ିଲା । ମନେହେଲା ଲକ୍ଷ ଲକ୍ଷ ଜ୍ୟୋତିଷ୍କଗଣ ଯେପରି ମହାବେଗରେ ବିଚ୍ଛୁରିତ ହୋଇପଡ଼ୁଛନ୍ତି । ବ୍ୟାପ୍ତି—ବିସ୍ଫୋରଣର ପ୍ରଖର ବ୍ୟାପ୍ତି ବିସ୍ମୟବିମୂଢ଼ କରି ଦେଉଛି । ଏଇ ଆଲୋକ ବିନ୍ଦୁଗୁଡ଼ିକ ଗୋଟିଏ ଗୋଟିଏ ଜ୍ୟୋତିଷ୍କ ରୂପେ ଭାସିଯାଉଛନ୍ତି । ମହାକାଶର ବିରାଟ ଏ ରୂପ, ଅକଳନୀୟ ମହାନତାର ବିଶ୍ୱରୂପ! ମହାସଙ୍ଗୀତର ଶବ୍ଦ ଆଉ ଶ୍ରୁତିଗୋଚର ନୁହେଁ । କେବଳ ଗ୍ରହତାରାର ଘୂର୍ଣ୍ଣନ ଓ ଅସୀମ ବ୍ୟାପ୍ତିର ଅଦୃଶ୍ୟ କମ୍ପନରେ ହିଁ ତାହା ବ୍ୟକ୍ତ ହେଉଛି ।

ସୃଷ୍ଟି ନିଜେ ବିସ୍ମିତା; ନିଜର ବିକାଶରେ ନିଜେ ପରାହତା, ନିଜ ଜଟିଳତାରେ ନିଜେ ଜଡ଼ିତା! ବୋଧହୁଏ ଧ୍ୟାନମଗ୍ନା ତପଶ୍ଚାରିଣୀ ସୃଷ୍ଟି ଚେତନାର ମୂଳ ଉତ୍ସ ଜାଣିପାରୁ ନାହିଁ; ବିସ୍ମୟ ବିମୂଢ଼ ହୋଇ ଜଡ଼ବତ୍ ନିଶ୍ଚେଷ୍ଟ ପଡ଼ିରହିଛି । ସ୍ରଷ୍ଟା ଗଭୀର ଶ୍ରଦ୍ଧା ଓ ସମ୍ମାନରେ ଅପେକ୍ଷା କରି ରହିଛି । ନିଜର ପରିଚୟର ଚମକରେ ସେ ସୃଷ୍ଟିକୁ ସ୍ତବ୍ଧ ଚକିତ କରିବାକୁ ଚାହେଁ ନା । ଯୋଗନିଦ୍ରାର ସମାପ୍ତି ପରେ ଅବଶ୍ୟ ସେ ଦିନେ ତା'ର ସ୍ରଷ୍ଟାକୁ ଆଖି ମେଲି ଦେଖିବ । ହୋଇପାରେ ଅନନ୍ତ ନିଦ୍ରା ଏ ସୃଷ୍ଟିର ଏବଂ ଚିରଜାଗ୍ରତ ଏ ସ୍ରଷ୍ଟା—ଉଭୟେ ଚିରପ୍ରତୀକ୍ଷମାଣ ।



# ଅଶ୍ରୁତ ସ୍ୱର

ରାମଗିରି ଆଶ୍ରମର ଯକ୍ଷ ଆଦ୍ୟ ଆଷାଢ଼ରେ ମେଘଖଣ୍ଡକୁ ଦେଖି ଦୂତରୂପେ ଅଳକାପୁରକୁ ପଠାଇଦେଲା ବୋଲି ଯଂଖ୍ୟାଏ ଅଦ୍ୟାବଧି ନାକରେ ହାତ ଦେଇ ହସନ୍ତି । ସେମାନେ ହସନ୍ତି ଏବଂ ହସନ୍ତି ବୋଲି ସେମାନଙ୍କ ତରରେ କାଳିଦାସ ମଧ୍ୟ ତାଂକ ଯକ୍ଷଟିର ଏଭଳି ଅସ୍ୱାଭାବିକତା ପାଇଁ ଗୋଟାଏ ପ୍ରକାର ଓକିଲାତି କରିଛନ୍ତି । ପାଗଳ କିଂବା ମଦ୍ୟପ ଯେପରି ସ୍ୱାଭାବିକ ବ୍ୟବହାର ପାଇଁ ବାଧ୍ୟ ନହୁଂତି, କାମାର୍ତ୍ତ ମଧ୍ୟ ଜଡ଼ଚେତନ ବାରି ନ ପାରିବା କଥାଟେ ସେହିପରି ଯୁକ୍ତିଯଙ୍ଗତ । ଯେଉଁ ବିଚାର-ବୁଦ୍ଧି ବଳରେ ତର୍କ କରାଯାଏ, ସେଇଟା ଯଦି ସବୁବେଳେ କ୍ଷୁରଧାର ପରି ଚାଇଁ ଚାଇଁ ହେଉଥିବ, ତେବେ ତ' କଥା ସେଇଠି ସରିଗଲା ; କାରଣ କଳ୍ପନା ରହିବ ନାହିଁ, ଏଣୁ ଭୂତ ଭବିଷ୍ୟତ ମଧ୍ୟ ରହିବନାହିଁ । ସାହିତ୍ୟ, ଦର୍ଶନ ଏକେବାରେ ନାକଚ ଏବଂ ଧର୍ମଧାରଣା ସମ୍ପୂର୍ଣ୍ଣ ଅସମ୍ଭବ । ସେଇ ନାକଚେକା ନୀତି-ବାଗୀଶଦଳ ଚଷମା ପିନ୍ଧି କାବ୍ୟରୂପୀ କବିଟିକୁ ଓଲଟ ପାଲଟ କରି ଚଢ଼େଇଲାବେଳେ ଓଠ ଲେଉଟେଇ ଭୂରୁ କୁଂଚେଇ ଟାକରା ମାରନ୍ତି ଏବଂ ବିଚାରା ଯଦି କୌଣସି ଗୋଟିଏ ମନ୍ତ୍ରରେ କେବେ ଚତୁର୍ଦ୍ଦଶୀର ଜହ୍ନ ଦେଖିଦେଇଛି, ତେବେ ତାକୁ ନିର୍ବିକାର, ଶୂନ୍ୟରେ ଟଙ୍ଗେଇ ଦିଅନ୍ତି । ତାଂକ ପାଇଁ ମେଘ ସମ୍ପୂର୍ଣ୍ଣ ଜଡ଼, ହଂସ ବା ଭ୍ରମର କାଣୀରେ ସମ୍ପୃକ୍ତ ପଡ଼ି ନାହାଂତି, ଏଣୁ ସେମାନଙ୍କୁ ଦୂତ କରିବା ଭଲା କିପରି ସମ୍ଭବ? ଆହା ବିଚାରା ! ଶୁଖିଲା କାଠଖୁଣ୍ଟା ପରି ଏମାନଙ୍କ ଜୀବନରେ କେବେ ହେଲେ ଫୁଲ ଫୁଟେନାହିଁ । କେବଳ ଓ୍ୱାଉ ଫାଳିଲା ପରି ସୂତାଏ ଗୋଟାକିଆ ଓଜନ ଓହଳି ଥାଏ । ସେଇଥିରେ ତାଂକ ଡାଳ ଲଇଁ ରହେ ଏବଂ ତାକୁ ବଣିଜ କରି ସେମାନେ ବଂଚନ୍ତି ଓ ମରନ୍ତି । ଅଦ୍‌ଭୁତର ସଂଘାତରେ ଆଟବିତ ହେବାର ନମନୀୟତା ତାଂକର ନାହିଁ । ଏ ଶୁଷ୍କ କାଷ୍ଠ ମହାଶୟମାନେ ଗୋଟିଏ ଗୋଟିଏ ଦୁଷ୍ଟଗ୍ରହ । ସେମାନଙ୍କୁ କିଛି ବଳିଭୋଜ୍ୟ ଦେଇ ଆସେ଼ଇ ଆସନ୍ତୁ । ସେମାନଙ୍କ ପାଇଁ ନିଷିଦ୍ଧ ଅଂଚଳର ବଣଭୋଜି ଭିତରକୁ ଆପଣଙ୍କୁ ନିମନ୍ତ୍ରଣ ରହିଲା । ଆପଣଙ୍କୁ ହାତଧରି ଯେ ପାଛୋଟି ନେଇଯିବେ, ସେ ହୁଏତ ସଦାଚଂଚଳ ତରୁଣ ପିପ୍‌ପଳଟିଏ । ଯେ ଆପଣଙ୍କ ଆଗରେ ନାଚି ନାଚି ରୁପାର ଝରଣାପରି ଝରିଯିବ ସେ ହୁଏତ ପୂର୍ଣ୍ଣମୀର ପାହାଡ଼ । ଆପଣ ସମସ୍ତଙ୍କୁ ଜାଣନ୍ତି କିନ୍ତୁ ଚିହ୍ନନ୍ତି ନାହିଁ । ଦୋଷ ଆପଣଙ୍କର ନୁହେଁ । ଯାହାର ଦୋଷ ଆପଣ ତାଂକୁ ଫାଟକ ପାଖରେ ଛାଡ଼ି-ଦେଇ ଆସିଛନ୍ତି ।

ଜହ୍ନକୁ ମାମୁଁ ବୋଲି ଡାକିବା ବୟସରେ ଆପଣ ବେଳେବେଳେ ଧରିଥିବା ପ୍ରଜାପତିଟିକୁ ଛାଡ଼ି ଦେଇଛନ୍ତି, ନ ହେଲେ ତା' ମା' କୁଆଡ଼େ କାନ୍ଦିଥାନ୍ତା। ଚାଟଶାଳୀକୁ ଗଲାବାଟରେ ବସ୍ତାନୀ ତଳେ ଥୋଇ ଦେଇ ବଟ ଓହଳରେ ଲଢ଼ିଏ ଦୋଳି ଖେଳିଛନ୍ତି, ନ ହେଲେ ବଟଗଛ ମନ ଊଣା କରିଦେଇଥାନ୍ତା। ଖୁବ୍ ନରମ ସେ ରାଜ୍ୟର ସ୍ୱପ୍ନ । ସରଳ ସ୍ନିଗ୍ଧ ଗୋଟିଏ ଚନ୍ଦ୍ରବିମ୍ବିତ ଜୁଆର ସୃଷ୍ଟି ସାରା ଛୁଳ ଛୁଳ ହେଉଥାଏ ସେ ରାଜ୍ୟରେ; କିନ୍ତୁ ବୟସ ବଢ଼ି ଆସିଲେ ଜୁଆର ଛୁଟିଯାଏ ଏବଂ କାଦୁଅ ହୁତ୍ତାଭିତରେ ବେଙ୍ଗେଇ ହୋଇ କିଆରୀ କିଆରୀ ହୋଇଯାନ୍ତି ଜଡ଼, ଚେତନ, ଉଦ୍ଭିଦ, ପଶୁ ପକ୍ଷୀ ଓ ମଣିଷ। ସେ ବୟସଟାରେ ବୋଧହୁଏ ଖୁବ୍ ସହଜରେ ନିଜକଥା ଅନ୍ୟ ଉପରେ ଆରୋପ କରିଦେଇ ହୁଏ; ସେ ବଟଗଛ ହେଉ ବା ପ୍ରଜାପତି ହେଉ କିନ୍ତୁ କଥାଟାକୁ ଆଉ ଟିକିଏ ତଳେଇ ଦେଖିଲେ ଜଣାଯାଉଛି ଯେ ଆମେ ମଶୁଣିବାଳ ପାଚିଲା ପର୍ଯ୍ୟନ୍ତ ଏ ବାଲ୍ୟାବସ୍ଥାରେ ହିଁ ରହିଥାଉ । ନହେଲେ କ'ଣ କାଠ ପଥରକୁ ଚନ୍ଦନ ସିନ୍ଦୂର ଦେଇ ଦୋଳିରେ ଝୁଲାଉ ଥାଆନ୍ତେ? ଆମେ ଖୁଆ ପାଉଥିବା ବିବିଧ ପିଠାପଣା ଭୋଗ ଲଗାଇ ଉନ୍ମତ୍ତପରି କୀର୍ତ୍ତନ କରୁଥାନ୍ତେ? ଆଜୀବନ ଆମେ ବାଳୁତ ହୋଇ ରହିଯାଉ । ଆମ ସ୍ୱପ୍ନଭୂମି ବଦଳିଯାଏ, କିନ୍ତୁ ନିଶା କଟେନାହିଁ ।

ଭାଗ୍ୟକୁ ନିଶା କଟେନାହିଁ ବୋଲି ମେଘଦୂତ ରଚନା ହୁଏ, ବାରମ୍ବାର ଜଡ଼-ଚେତନର ବ୍ୟବଧାନ ଡେଇଁ ଏକାକାର କରିବାର ଉତ୍ସୁକତା ଜାରି ରହେ । ବୟସ ବୃଦ୍ଧିକୁ ଅସ୍ୱୀକାର କରୁଥିବା ତା'ର ମୋଟା ଚଷମାକୁ ଭାଙ୍ଗିତଳେ ଲୁଚାଇ ଦେଇଥିବା ଚପଳମତି ବାଳକର ଅଜସ୍ର ଜୟ ହେଉ! ମୋଟ ଉପରେ ମାନବ କଳ୍ପନାର ଜୟହେଉ ! —ଯାହା କେବେ କୌଣସି ଶୃଙ୍ଖଳାକୁ ସ୍ୱୀକାର କରିନାହିଁ, ପୁରୁଣାରେ ନୂଆକୁ ସୃଷ୍ଟି କରିଛି; ନୂଆରେ ପୁରୁଣାକୁ ପୁନର୍ଜୀବିତ କରିଛି; ତା'ର ଚିର ପ୍ରବହମାନ ଧାରାରେ ଅହରହ ଇନ୍ଦ୍ରଧନୁର ରଙ୍ଗ ଫୁଟେଇ ଚାଲିଛି । ସେ ଜଡ଼ରେ ଜୀବନ୍ୟାସ କରେ, ଅଚଳକୁ ସ୍ପନ୍ଦିତକରେ; ମ୍ରିୟମାଣ, ନିର୍ଜୀବ୍ ଚେତନାରେ ନୂତନ ସ୍ଫୁରଣ ଯୋଗାଇ ଦିଏ । କଳ୍ପନାର ଇନ୍ଦ୍ରଜାଲରେ ସର୍ଜନା କରିଚାଲିଥିବା ସ୍ରଷ୍ଟା ସ୍ୱପ୍ନ-ବିଭୋର ନୁହେଁ, ସେ ଆଉ ଏକ ଘନିଷ୍ଠ ପର୍ଯ୍ୟାୟରେ ସତ୍ୟ-ବିଭୋର । କୌଣସି ନୀରବ ନିଶାର୍ଦ୍ଧରେ ବିସୁଭିସୁଭିସ୍ୱର ବିସ୍ଫୋରଣ ଘଟିଲେ ସେ ହିଁ ସାଗର ଗର୍ଭରେ ନିଜର ଅଦ୍ଭୁତ ଅସ୍ତ୍ୟୁଦୟ ଦେଖିପାରିବେ । ହୁଏତ ସେଇଟା ତା'ନିଜର ପ୍ରତିବିମ୍ବ; କିନ୍ତୁ ତା'ବୋଲି

ଆଗ୍ନେୟଗିରି କିଂବା ସାଗର ପରି ବସ୍ତୁ ତୁଳନାରେ ତାହା ଯେ କମ୍ ସତ, ଏକଥା କଣ କହିହେବ? ବରଂ ଉଭୟର ସଂଘାତରେ ଏ ଆତଂକିତ ସୃଷ୍ଟି ଅନ୍ୟ ଯେ କୌଣସି ବସ୍ତୁପ୍ରବାହପରି ସତ । ସ୍ଥୂଳ ଇନ୍ଦ୍ରିୟର ବଳୟଭିତରେ ମୋଟାମୋଟି ଭାବରେ ଆମେ ରହିଯାଉ । ବଡ଼ିଝୁଟକୁ ବେଢ଼ିଥିବା ଆଲୋକ ଚିତ୍ରର ପରପାରରେ ଅଦ୍‌ଭୁତ ରାଜ୍ୟ ଆମର ଅଗୋଚରେ ରହିଯାଏ । ଅତୀନ୍ଦ୍ରିୟ ଜଗତ ଅପରିଚିତ ରହିଯାଏ । ପରିଚିତ ପରିଧିକୁ ସ୍ପର୍ଶକରି ତା' ଉପରକୁ ଅଦୃଶ୍ୟ ଶୀତଳ ସ୍ୱପ୍ନପରି ସଂଚରି ଆସୁଥିବା 'ଅପରିଚିତ'ହିଁ ନିତ୍ୟ-ପ୍ରବୃଦ୍ଧ-ବର୍ଦ୍ଧମାନ । ସାମାନ୍ୟ ମାତ୍ର ଦୃଷ୍ଟିର ଅଦଳ ବଦଳ ହୋଇଗଲେ ଏ ରାଜ୍ୟରୁ ସେ ରାଜ୍ୟକୁ ପହଁରି ଯାଇହୁଏ ।

କୌଣସି ଆର୍ଦ୍ର ନିର୍ଜନ ଅପରାହ୍ଣରେ ନୀରବ ତାଳବଂଗଳାରେ ବସି ଆପଣ ସେ ଗଛଗୁଡ଼ିକୁ ନିଶ୍ଚୟ ଦେଖିଥିବେ । ପ୍ରତ୍ୟେକଟିର ଠାଣି ଅଲଗା, ଶାଖା ପତ୍ର ଡାଳ ସବୁ ଅଲଗା । ପବନ ବାଜିଲେ ଚହଲିଯିବା ଢଙ୍ଗୀ, ନ ବାଜିଲେ ଗୁମ୍ ମାରି ଠିଆ ରହିବାର ଢଙ୍ଗ, ଜଣକଠାରୁ ଆଉ ଜଣକର ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ପ୍ରତ୍ୟେକର ଗୋଟିଏ ଲେଖା ବ୍ୟକ୍ତିତ୍ୱ, ଯାହା ସଂସରେ ନ ମିଶିଲା ଭଳି ସମସ୍ତଙ୍କଠାରୁ ବାରି ହୋଇଗଲା ଭଳି । କିଏ ବିଶେ, ହେଇ ବୋଧହୁଏ ନିଦରୁ ଉଠି ବାହୁତୋଳି ଅଳସ ଭାଂଗୁଛି; ଗଣ୍ଡୁଏ ନରମ ହାଲୁକା ବାଳ ମୁହଁରେ ବକ୍ଷରେ ବିଛେଇ ହୋଇଯାଇଛି କିଏ ବିଶେ ଲାଜରେ ଜଡ଼ସଡ଼ ହୋଇ ଠିଆ-ହେଲାଭଳି । ଦଉଟି କଟା ଲଇ ପରି ସଂକୁଚିତ ବାହୁ ତା'ର ସଦ୍ୟସ୍ନାତ ଲାବଣ୍ୟକୁ ଘୋଡ଼େଇ ପାରୁନାହିଁ; ଆଖି ଟେକି ସେ ଅନେଇ ପାରୁନାହିଁ ମେଘବଳୟିତ ଶ୍ରାବଣର ଚନ୍ଦ୍ରକୁ; –ନୂପୁର-ରେଖା ଉପର ଦେଇ ଯମୁନା ବୋହିଯାଉଛି— । କେଳି ଜର ଜର ବଳିଷ୍ଠ ବୃଷ ପରି ଆଉ କାହାକୁ ଦେଖି ମନେହୁଏ କହିବାକୁ 'ପୁରୁଷପୁଙ୍ଗବ ଦେହି ଦାସ୍ୟ' । ତା'ଭିତରୁ କିଏ ହୁଏତ ପାଚିଲା ଭ୍ରୂ ତଳୁ ମିଟିମିଟି ଅନାଇ ମୁରୁକି ମାରେ; ତା ଚଂଦା-ମୁଣ୍ଡରେ ଦୁଇ ତିନି କେରା ଝୋଟ ପରି ଅଇରା ବାଳ । ତା'ର ଶାଖାଗୁଡ଼ିକ କେବଠୁ ଝଡ଼ିଗଲେଣି, ଶୁଖିଲାଣି ପତ୍ରର ସମ୍ଭାର । ଜଡ଼ି ମାଟି ଖାଇ ବିବର ପିଟିଗଲାଣି । ଦାନ୍ତ ନ ଥିବା ପାକୁଆ ପାଟି ମେଲେଇ ତଥାପି ସେ ମଇତ୍ରପଣିଆ ପ୍ରକାଶ କରେ । କିଏ ବିଶେ ପକ୍ଷ ଛାଟି ଦେଇ ଚହଟି ଆସୁ-ଥିବା ମୟୂର ପରି, ଫଣା ଟେକି ପଦ୍ମତୋଳାରେ ଝୁଲୁଥିବା ଚଂପାନାଗ ପରି ।

ଚିନ୍ତାରାଜ୍ୟରେ ଏସବୁକି ଉଦ୍ଭଟ ଅଳଙ୍କାରରେ ରୂପକ ବା ଉତ୍ପ୍ରେକ୍ଷା । କେବଳ ବାଗ୍‌ବିଳାସ—ଦାୟିତ୍ୱହୀନ ଲଗାମ ଛଡ଼ା କଳ୍ପନାର ମିଥ୍ୟାଚାର । ଗଛଗଡ଼ାକ କାହିଁକି ମଣିଷ ଭଳି ବା ପଶୁପକ୍ଷୀ ଭଳି ଦିଶିବେ? ଦିଶିବାରେ ସେମାନଙ୍କର ଆୟତ୍ତ ନାହିଁ । କେବଳ ଦେଖୁଥିବା ଆଖିରେ କେମିତି କାଚ ଲାଗିଛି ତା'ରି ଉପରେ ସେମାନଙ୍କର ରୂପ ଓ ରଙ୍ଗ ବଦଳି ଯାଏ । ଏଥିରେ ସତ୍ୟତା ନାହିଁ ; ଅଛି କେବଳ ଦର୍ଶକର ପ୍ରତି ମୁହୂର୍ତ୍ତରେ ବଦଳୁଥିବା ଖିଆଲି ରୁଚି । ସେଇ ଗଛ ହୁଏତ' ଦାନ୍ତ କଡ଼ମଡ଼ କରି ଆଖି ତରାଟି ମାଡ଼ିଆସିଲା ପରି ଦିଶିପାରେ । ବାହୁ ଟେକି ଗର୍ଜି ଉଠିଲାପରି ବୋଧ ହୋଇପାରେ । ଅତି ବିକଟାଳ ଓ ଭୟଙ୍କର ଦିଶିପାରେ । ଅତଏବ ଦିଶିବା ଗୋଟାଏ ବ୍ୟଭି-ଚାରୀ କିଂବଦନ୍ତୀ । ସେଥିରେ କି ପ୍ରକାର ବା ସତ୍ୟ ଥାଇପାରେ? କୌଣସି ଗୋଟାଏ ମୁହୂର୍ତ୍ତରେ ମଣିଷ ଏବଂ ଗଛ ପରସ୍ପରକୁ ସ୍ପର୍ଶକରୁଥିବା ହେତୁ ହୁଏତ ଦର୍ଶକ-ଉଦ୍‌ଭିଦାୟିତ ହୋଇଯାଏ ଏବଂ ଗଛ ହୋଇଯାଏ ମାନବାୟିତ । ଗୋଟିକରେ ଆରଟିର ନିବିଡ଼ ପ୍ରତିଫଳନ ହୁଏ ବୋଲି ଏଭଳି ଭ୍ରମ ହେବା ସ୍ୱାଭାବିକ । ଖୁବ୍ ସମ୍ଭବ ଏହା ହିଁ ହୁଏ ; କିନ୍ତୁ ସବୁବେଳେ କ'ଣ ତାହା ହୁଏ ନା ସମସ୍ତଙ୍କ ପାଇଁ ହୁଏ? କୌଣସି ବିଶିଷ୍ଟ ପରିବେଶ ଭିତରେ ଅନେକ ଆବରଣ ତଳେ ଖୁବ୍ ଗହୀରରେ ଏ ପ୍ରକାର ନିବିଡ଼ ଅନୁଭବଟିଏ ଆସେ ଏବଂ ଏଇଟା ଗୋଟାଏ ପ୍ରକାର ସ୍ନିଗ୍ଧ ଶୀତଳ ଆପଣାପଣର ଅନୁଭବ ; ଭଲ ପାଇବାର ଅଦ୍‌ଭୁତ ଅନୁଭବ ।

ଗଛଟିଏ ଆଉ କାହାଭଳି ନ ଦିଶି କେବଳ ଗଛପରି ଦିଶିଲେ ମଧ୍ୟ ଭାରି ଚମତ୍କାର ଦିଶିପାରେ । ଖାଲି ତାକୁ ଠିକ୍‌ରୂପେ ନିଘା ଜମେଇ ଦେଖି ଜାଣିଲେ ହେଲା । କିଛି ସମୟ ଧରି ଆମେ କେବଳ ନିଜକୁ ହିଁ ସର୍ବତ୍ର ଦେଖିଥାଉ । ଆମ ରୁଚି, ଆମ ସଂଗେ ମେଳ ଖାଉଥିବା, ବାରପଣରୁ ଷୋଳପଣ ମିଶି ଯାଉଥିବା ରଙ୍ଗ ରୂପରେ ଆତ୍ମୀୟତା ଅନୁଭବ କରୁଥାଉ । ଗଛଟିକୁ ବାରଂବାର ଯେତେବେଳେ ଅନାଇଲେ ମଧ୍ୟ ତା'ର ନୂଆ ରୂପ, ନୂଆ ଛନ୍ଦ ଆମକୁ ମୁଗ୍ଧ କରେ । ଘନିଷ୍ଠବ୍ୟକ୍ତି ଯେପରି ବହୁ ସହସ୍ର କମନୀୟତାର ପାଖୁଡ଼ା ମେଲି ଜୀବନକୁ ମଧୁସ୍ନାତ କରୁଥାଏ, ତଥାପି ତାର ଅସଲ କେନ୍ଦ୍ରଟିକୁ ଛୁଇଁ ହୁଏନାହିଁ, ଚିହ୍ନି ହୁଏନାହିଁ ସେ ଅତି ପରିଚିତ ବନ୍ଧୁଟିକୁ ସେହିପରି ଏ ଗଛଟି ଶାଖା, ପ୍ରଶାଖା, ପତ୍ରପୁଷ୍ପର ଗୋଟିଏ ମୁହୂର୍ତ୍ତରୁ ମୁହୂର୍ତ୍ତକୁ ସେ ବଦଳି ଚାଲି-ଥାଏ ; ଦଶ ଦିଗରୁ ବଦଳି ଚାଲିଥାଏ । କୌଣସି ଗୋଟିଏ ମୁହୂର୍ତ୍ତରେ ସମଗ୍ର

ଉନ୍ମୁକ୍ତ କରି ତାକୁ ଦେଖିବା ଅନୁଭବ ନୁହେଁ । ଏଣୁ ସେମାନେ ଯୋଗାଏ ନେଇ ଯାହା କିଛି ସଂପର୍କ ହୋଇଗଲା, କେବଳ ସେତିକି । ଏ ଅପରୂପ ପ୍ରସ୍ତାବରେ ହଠାତ୍ ଭାବେ ଏବଂ ଯେଉଁ ରୂପ, ରସ ଓ ଛନ୍ଦରେ ସେ ଜଡ଼େଇ ରଖିଥିଲା ହଠାତ୍ ସେ ସବୁ ଜଣାପଡ଼େ—ସେଇ ପରିମାଣରେ ନିଜର ଆଖି, ନାକ, କାନର ଧରାବନ୍ଧା ବସ୍ତୁ-କ୍ରିୟା ଜଣାପଡ଼େ ଅତି ବାହ୍ୟିଆ, ଅତି ସାଧାରଣ, ଉପରେ ଉପରେ କେବଳ ଗୋଟିଏ ପ୍ରକାର ଭାବବୋଧିପରି । ସବୁ ରୂପ ରସ ଛନ୍ଦ ଆଡ଼େଇ ଦେଲା ପରେ ଯେଉଁ ଅବଶେଷଟି ରହିଯାଏ ଏବଂ ଦେଖି ଶୁଣି ଛୁଇଁବାର ବାହ୍ୟ ଆଚରଣ ପଶ୍ଚାତ୍‌ରେ ଦର୍ଶକର ଯେଉଁ ଅବଶେଷାଂଶ ଲୁଚିଥାଏ, ସେ ଦୁହେଁ ହଠାତ୍ ଦିନେ ମୁହାଁମୁହିଁ ହୋଇଯାଂତି । ଘନ ଅନ୍ଧାର ଏବଂ ନୀରବତା ଭିତରେ ବିଜୁଳି ଚମକିଲାପରି ଗୋଟାଏ ଆକସ୍ମିକ ସଂପର୍କ ହୋଇଯାଏ, ନିର୍ବାକ୍ ବନସ୍ପତି ସେଠି କଥା କହେ । ସମସ୍ୱରରେ ଦୁହେଁ ଗୋଟିଏ ଛନ୍ଦରେ ଗୋଟିଏ ମାତ୍ର ସଂଗୀତ ଗାଇଉଠନ୍ତି । ତେଣିକି ଗଛରୁ ପୁରୁଣା ବକଳା ଝାଡ଼ି-ଦେଇ ତାକୁ କୁଣ୍ଡେଇବା ସହଜ, ତା' ପତ୍ରରେ ପତ୍ରରେ ଲହଡ଼ି ମାରୁଥିବା ଆତ୍ମୀୟତାକୁ ଅନୁଭବ କରିବା ସହଜ, ତା'ମୂଳରେ ପାଣିଢ଼ାଳି ନିଜର ତୃଷା ମେଣ୍ଟେଇବା କିମ୍ବା ତା'ର ସବୁଜ ଚୂଡ଼ା ଉପରେ ହିମବର୍ଷା କରି ନିଜେ ଆର୍ଦ୍ରଶୀତଳ ହେବା ସହଜ । ଏଣୁ ଜଣେ ମୟୂର ପରି ନାଚି ଉଠିଲେ ଆଉ ଜଣକ ନବଜୀମୂତ ରୂପରେ ପ୍ରେମ ରକ୍ଷା କରିବାକୁ ବାଧ୍ୟ । ଏଭଳି ନୂଆ ନୂଆ ରୂପ ସବୁ ସେଇ ମୌଳିକ ସଂପର୍କ ଓ ଛନ୍ଦର ହିଁ ବିଭିନ୍ନ ସ୍ୱର ।

ଥରେ ଏପରି ନିବିଡ଼ ସଂପର୍କ ବସ୍ତୁ ବା ବ୍ୟକ୍ତି ସହିତ ସ୍ଥାପିତ ହୋଇଗଲେ, ସମସ୍ତ ଜଗତରେ ସେଇ ଗୋଟିଏ ମାତ୍ର ଛନ୍ଦ ଅନୁଭବ ହୋଇପାରେ । ଜଡ଼ ଚେତନ ଏକାକାର ହୋଇଯାଇ ପାରେ । ଚେତନାର କେନ୍ଦ୍ରବିନ୍ଦୁରେ ସମ୍ବିତ୍ ସମ୍ବେଦନଶୀଳତାରେ ସର୍ବଭୂତରେ ପ୍ରସାରିତ ହୋଇ ଅଦ୍ଭୁତ ପ୍ରେମାନନ୍ଦର ଆସ୍ୱାଦନ କରିପାରେ । ତେଣିକି ସେ ଯଦି ଆକାଶକୁ ବା ପକ୍ଷୀର ମେଘକୁ ଭାଇ ବୋଲି ସମ୍ବୋଧନ କଲା, ତାହା ଖୁବ୍ ସ୍ୱାଭାବିକ୍ ଏବଂ ଯଦି ପାହାଡ଼ ବା ପାଦପକୁ ଚଳନ୍ତା ପ୍ରବାହ ରୂପେ ଦେଖିଲା, ସେଥିରେ ମଧ୍ୟ ଅସୁବିଧା କିଛି ନାହିଁ । ପ୍ରେମର ପୃଷ୍ଠଭୂମିରେ ସମସ୍ତ ବସ୍ତୁସଂଘ ମୁକୁରବତ୍ କେବଳ ଗୋଟିଏ ସତ୍ୟ ରୂପକୁ ବିମ୍ବିତ କରିବା ସ୍ୱାଭାବିକ ।

ଏ ସ୍ୱରର ଭାଷାନାହିଁ, ଶବ୍ଦସ୍ପର୍ଶାଦି ଅନନ୍ତ କୋଳାହଳର ବହୁଳତା ନାହିଁ । ଆପଣ ଏ ସ୍ୱରଟିକୁ ସମ୍ପୂର୍ଣ୍ଣ କଳ୍ପନାର ଅଳୀକ ରଚନା ବୋଲି ଭୁଷି ଉଡ଼େଇ

ଦେବାର ଅଭ୍ୟାସ କରିଛନ୍ତି । ପଥର ସାଂଗରେ କେହି ଭାବଦୋସ୍ତି କଲେ ଆପଣ ପଂଡ଼ିତପଣିଆରେ ସେଇ ନିର୍ବୋଧ ଆଦିମ ଶିଶୁଗୁଡ଼ିକୁ ଉପହାସ କରନ୍ତି । ପ୍ରଚଂଡ ଖରାରେ ଶିଖ ମଉଳାଇ ଝାଉଁଳି ପଡ଼ିଥିବା ବୃଦ୍ଧାଟିର ବ୍ୟଥାରେ ଆତୁର ହେଲେ ଆପଣ ବୁଝିପାରନ୍ତି ନାହିଁ । କଳାଧଳାର ଦୁରନ୍ତ ବ୍ୟବଧାନକୁ ବେଖାତିର କରି, ବିଭିନ୍ନ ମାନବୀ ଭାଷାର ଗିରିକାନ୍ତାର ଉଲ୍ଲଂଘନ କରି, ମଣିଷ ଛୁଆର ଅପରିମେୟ ଯାତନାକୁ ଏଇ ସାର୍ବଜନୀନ ସ୍ୱରରେ ତର୍ଜମା କରିଦେଲେ, ଆପଣ ଅନ୍ତସ୍ତ ହୁଅନ୍ତି ! ଏଥିରେ କୋରାଣ୍ ବା ବାଇବେଲ୍‌ର ପବିତ୍ର ଶବ୍ଦ ନ ଥିବାରୁ ଆପଣ ହତାଶ ହୁଅନ୍ତି ! ଆପଣ ଏତେ ସବୁ ନ କରି ବରଂ କେବଳ ଥରେ ନିଜର ବୃତ୍ତି ନିରୋଧ କରି କାନେଇବାକୁ ଚେଷ୍ଟା କରନ୍ତୁ । ତା'ପରେ ଆପଣଙ୍କର ଅନୁଭବକୁ ସ୍ୱର୍ଗର ଅଗ୍ନିକଣା ପରି ଆପଣ ନିଜେ ବିତରଣ କରିବେ ଆମ ଭିତରୁ ଜଣେ ଶରବିଦ୍ଧ କ୍ରୌଂଚର ବେଦନା ପାଇଁ ଶୋକ କରିଅଛନ୍ତି । ଆଉ ଅନେକେ ହୁଏତ ଭାଷାହୀନ ମୁର୍ଚ୍ଛନାରେ ସମଗ୍ର ପ୍ରାଣିଜଗତକୁ ବେଣୁବୀଣାର ମଧୁର ସ୍ୱରରୂପରେ ମୁଗ୍ଧ କରିଛନ୍ତି । ଏ କଳ୍ପନାପାୟୀ ଗୋଷ୍ଠୀ କିନ୍ତୁ ସେ ମୌଳିକ ସ୍ୱର ଶୁଣି ଶୁଣି ନାହାଁନ୍ତି । କାରଣ ତା'ର ପ୍ରଥମ ଲକ୍ଷଣ ସ୍ତବ୍ଧତା, ଘନ—ପ୍ରଶାନ୍ତ ନୀରବତା । ତାକୁ ଥରେ ଶୁଣିଲେ ତଲ୍ଲୀନ ହୋଇଯିବା କଥା । ସେଠି ପହଂଚିଗଲେ ସେ ରାଜ୍ୟରୁ ଫେରିବାର ପ୍ରଶ୍ନ ନାହିଁ, ବିଭିନ୍ନ ମାଧ୍ୟମ-ରେ ତାକୁ ପ୍ରକାଶ କରିବାର ଅବକାଶ ନାହିଁ ।

ଏଣୁ ଆପଣ ବାଛନ୍ତୁ । ଆଗକୁ କିନ୍ତୁ କହି ରଖୁଛି ଯେ ଏ ପନ୍ଥା ସହଜ ନୁହେଁ 'ଦୁର୍ଗଂ ପଥ ତତ୍ କବୟୋ ବଦଂତି ।' ଆପଣ ଏ ଅଦ୍ଭୁତ ରାଜ୍ୟକୁ ଆସିଲେ ଜଗତର ଉପର ଆବରଣ ଖସିପଡ଼ିବ; ଯାହା ଉପରେ ସାଧାରଣତଃ ଆପଣଙ୍କର ସମସ୍ତ ମୂଲ୍ୟବୋଧ ଝୁଲିହୋଇ ରହିଛି । ସେ ତୀବ୍ର ଅନୁଭବ ସହି ପାରିବେତ? ନ ହେଲେ ଏବେମଧ୍ୟ ସମୟ ଅଛି । ଦୁଆରେ ଅପେକ୍ଷା କରି ରହିଛନ୍ତି ଆପଣଙ୍କର ମୋଟା ଚଷମା ପରିହିତ ପଂଡ଼ିତ ବନ୍ଧୁ । ଆପଣ ଫେରିଯାଆନ୍ତୁ ଛାପାକାଗଜ ଏବଂ ତାଳପତ୍ରର ବହୁ ଭାଷା ଓ ଭାବର ପରିଚିତ ରାଜ୍ୟକୁ । ସେଠି ଚଂଦ୍ର ଏକ ପରାଜିତ ଜଡ଼ପିଂଡ; ଉଦ୍ଭିଦ ପଶୁପକ୍ଷୀ ତାଂକର ଡାଣିତିକ ସୀମାରେଖା ଭିତରେ ପରସ୍ପରଠାରୁ ବିଚ୍ଛିନ୍ନ । ଏକାକାର ହୋଇଯିବାର ଗୋଳମାଳ ସେଠି ଆଦୌ ନାହିଁ । ଅଶ୍ରୁତ ସ୍ୱରର ସଂଘାତ ଆପଣଙ୍କୁ କକ୍ଷଚ୍ୟୁତ କରିବାର ଆଶଙ୍କା ନାହିଁ । ସେଠି କିନ୍ତୁ ଦିନେ ନା ଦିନେ କ୍ଳାନ୍ତ ବୋଧ କରି ଆପଣ ଫିଟି ଆସିବାକୁ ଚାହିଁବେ । ଏ ଦ୍ୱାର ସବୁବେଳେ ଉନ୍ମୁକ୍ତ ରହିଲା ଏବଂ ଆପଣଙ୍କୁ ନିମନ୍ତ୍ରଣ ରହିଲା, ନିଶ୍ଚୟ ଆସିବେ ।

# ଫଗୁଣ

ଲୋକେ କହନ୍ତି ବିଲାତରେ କୁଆଡ଼େ ନିଦାଘ କାଳ ନାହିଁ । ଏଣୁ ସେଇଠି 'ସୂର୍ଯ୍ୟ ପ୍ରଚଣ୍ଡ' ହେବା ଯେପରି ଅସମ୍ଭବ, 'ଚନ୍ଦ୍ରମା ସ୍ପୃହଣୀୟ' ହେବା ମଧ୍ୟ ସେ ମେଘାଚ୍ଛନ୍ନ ଆକାଶରେ ସେହିପରି ଅସାମାନ୍ୟ । ବର୍ଷର ସମଗ୍ର ଆୟତନରେ କେବଳ ଗୋଟିଏ ମାତ୍ର ହିମାକ୍ତ ଚଢ଼େଇ ପକ୍ଷ ବିସ୍ତାର କରି ରହିଥାଏ । ତା'ର ଗୋଟିଏ ଡେଣା ଉପରେ ଅଜସ୍ର ଇନ୍ଦ୍ରଧନୁର ମରୁଡ଼ି ବୃଷ୍ଟିହୋଇ ଯାଇଥାଏ ଏବଂ ଅନ୍ୟ ଡେଣାରେ ବୋଝେଇ ହୋଇ ରହିଥାଏ ଭାର ଭାର ସୁନାର ଫସଲ । ଗୋଟିଏ ସେମାନଙ୍କର ବର୍ଣ୍ଣୋଜ୍ଜ୍ୱଳ ବସନ୍ତ ଏବଂ ଅନ୍ୟଟି କନକ କୁଙ୍କୁମର ଶରତ । ଉଭୟଙ୍କୁ ପୃଥକ୍ କରୁଥାଏ ଘନନୀଳ ବର୍ଣ୍ଣ ରେଖାର ଆକାଶ ଏବଂ କିଛି ପ୍ରାଞ୍ଜଳ ସୂର୍ଯ୍ୟ । ସେମାନଙ୍କୁ ଅବଶ୍ୟ ସଂଯୁକ୍ତ କରୁଥାଏ ସେଇ ଶ୍ୱେତ–ଶୀତଳ–ହିମାକ୍ତ ଚଢ଼େଇଟି । ଏଇ ଘୃଣ୍ୟ ପ୍ରକାଣ୍ଡ 'ଆଲ୍‌ବାଟ୍ରସ୍' ସତେ ବା ସେଇ ଶୀତାର୍ତ୍ତ ପ୍ରଦେଶରେ କାଳର ହିଁ ଆତ୍ମା । ତଥାପି ସେଠିକା କବି କହନ୍ତି ଯେ ଫଗୁଣଟା କୁଆଡ଼େ ସବୁଠାରୁ ବେଶି ଦୁଃସହ ।

ଏଠି ମଧ୍ୟ ଆମେ ସେଇଆ କହନ୍ତୁ, ଅବଶ୍ୟ ଆଉ ଗୋଟିଏ ଦୃଷ୍ଟିରୁ । ଯେତେ–ବେଳେ ପଲାଶ ଓ କୃଷ୍ଣଚୂଡ଼ାର ଶାଖାରେ ନିଆଁ ଲାଗିଯାଏ, ସବୁଜ ଅଗ୍ନିରେ ଝଳିଉଠେ ସମଗ୍ର ବନସ୍ପତିର ରାଜ୍ୟ, ଭାର ଭାର ସୌରଭରେ ବୋଝେଇ ହୋଇ ପବନ ଦୋହଲୁଥାଏ ;ଯଦି କାହା ଆଖିରେ ଝୁଲିଟିଏ ସ୍ୱପ୍ନ ନ ଦିଶିଲା, ଯଦି ବକ୍ଷୁ ଭିତରେ କୌଣସି ସୂକ୍ଷ୍ମ ସୂତ୍ରଟିଏ ସ୍ୱପ୍ନ ସଂଦୀପିତ ନ ହେଲା, ତେବେ ସେ ଜାଣ ପାଷାଣର ମୂର୍ତ୍ତି । ତା'ଭିତରେ ଗୋଟାଏ କାଠର ହୃତ୍‌ପିଣ୍ଡ କେବଳ ଠକ୍ ଠକ୍ ହେଉଥାଏ । କୌଣସି କେନ୍ଦ୍ରରେ ଶିହରଣର ଯୋଗ୍ୟତା ନାହିଁ, ଟିପ ବାଜିଲେ ଝଙ୍କୃତ ହୋଇ ଉଠିବାର ଶାଣିତ ସୂକ୍ଷ୍ମତା ନାହିଁ ;କିନ୍ତୁ ସୂର୍ଯ୍ୟ ରଶ୍ମିରେ ଏତେ ସଞ୍ଜୀବନୀ, ପବନର ମୃଦୁ–ସ୍ପର୍ଶରେ ଏତେ ଆବାହନ, ମାଟି ପାଣି ଆକାଶରେ ଏତେ ନୀରବ ମନ୍ତ୍ରକୁ ଉପେକ୍ଷା କରିହୁଏ ନାହିଁ । ଶୁଖିଲା ଡାଳରେ ମଧୁ ସଂଚାର ହୁଏ । ଟାଣ ରୁକ୍ଷ ଆବରଣ ତଳୁ ଅବଲୁପ୍ତ ଯୌବନର ତରଙ୍ଗ ଗୋଟାଏ ଅଦ୍ଭୁତ ଆଲୋଡ଼ନରେ ଉପରକୁ ଫାଟିପଡ଼େ, ମଞ୍ଜିଦିଏ ନାଲି ନେଳୀ ପତ୍ରର ସଂଭାର । ମଣିଷ ରକ୍ତରେ ନିଆଁ ଲାଗିଯାଏ । ସେ ଅନୁଭବ

କରେ ଗୋଟାଏ ଆକୁଂଠ ଉଭୁସିଉଠୁଥିବା ଆବେଗ, ଏକପ୍ରକାର ଶରୀର ମନ୍ଥନର ପୀଡ଼ା । ତା'ର ନାଭିକେନ୍ଦ୍ରରୁ କେଶାଗ୍ର ପର୍ଯ୍ୟନ୍ତ ଅସ୍ଥିର ହୋଇ-ଉଠେ । ଆଖି ଆଗରେ ନିଆଁ ଝୁଲ ପରି ବୃଣି ହେଉଥାଏ ଫଗୁଣର ଫଗୁ ବର୍ଷା । ଚାରିଆଡ଼େ ନୂତନ ଜୀବନ, ନୂତନ ଯୌବନ, ନୂତନ ସୃଜନର ପୀଡ଼ା...ଏପରି ବେଦନା-ବିଦ୍ଧ ହେଲେ ଫଗୁଣକୁ 'ନିଦାରୁଣ' ନ କହି ଆଉ କଣ କୁହାଯାଇପାରେ?

ଆମେ ତାକୁ 'ନିଦାରୁଣ' କହୁ ସତ କିନ୍ତୁ ଅଭିସାରିକାର ଉତ୍କଂଠା ଓ ଯାତନା ନେଇ ତାକୁ ଅପେକ୍ଷା କରୁ, ତାକୁ ଭଲପାଉ ସବୁଠୁ ବେଶି; ଅପେକ୍ଷା କରୁ ତାର ସଂଘାତକୁ, ତାର ସ୍ପର୍ଶରେ ଫେନାୟିତ ହୋଇଉଠୁଥିବା ଉଚ୍ଛ୍ୱାସକୁ । ସେ ଆସିଲେ ମହୁ ଝରିଯାଏ, ପ୍ରତ୍ୟେକ ବିନ୍ଦୁରେ ସୂର୍ଯ୍ୟ ଝରିଯାଏ, ସଦ୍ଧୁର ଗର୍ଭକୁ । 'ମଧୁବାତା ଋତାୟତେ ମଧୁକ୍ଷରନ୍ତି ସିନ୍ଧବଃ ।' ଯେଉଁ ଆଡ଼େ ଚାହିଁଲେ ଗୋଟାଏ ସ୍ନିଗ୍ଧତା—ମଧୁମାନ୍ ସୂର୍ଯ୍ୟ ସୀମାଠାରୁ ମଧୁମତୀ ପୃଥିବୀ ପର୍ଯ୍ୟନ୍ତ । ଆମେ ପ୍ରତିଟି ନିଃଶ୍ୱାସରେ ସୁରା ସେବନ କରୁ । ସେ ଅଗ୍ନି ହୋଇ ରକ୍ତରେ ନିଆଁ ଜାଳିଦିଏ । ଏ ଜ୍ୱାଳାର ଅଦ୍ଭୁତ ସ୍ୱାଦ ପାଇଁ, ଏ ପୀଡ଼ନର ପ୍ରଚଣ୍ଡ ଆକର୍ଷଣ ପାଇଁ ଆମେ ଫଗୁଣକୁ ଆବାହନ କରୁ ।

ଫଗୁଣ ଆସେ, ବାରମାସ ଭିତରେ ମାତ୍ର ଥରେ ଆସେ । ଭାରି ଖୁସୁମୁସିଆ ଲାଗେ, ବୁକୁ ଭିତରେ ଗଳୁଟାଏ ବାସ୍ନା ପବନ ବୋଝେଇ ହେଲାପରି ଲାଗେ । କେଉଁଠି ଚହଟିଇ ହୋଇଯିବାକୁ ଇଚ୍ଛା ହୁଏ । ଗଳୁଟାଏ ଖର୍ଚ୍ଚ ହୋଇଯିବାକୁ ଖନ୍ମନ୍ ଲାଗେ । ପାଦ ଯୋଡ଼ାକରେ କାହୁଁ ଆସି ନୃତ୍ୟ ଝଙ୍କୃତ ହୋଇ-ଯାଏ । ସ୍ୱରରେ ସଙ୍ଗୀତ ଠେଲି ପଶିବାକୁ ପ୍ରୟାସ କରେ । କେଉଁଠି ହେଲେ ଆଷାଢ଼ର ଆର୍ଦ୍ରତା ନାହିଁ—ନରମ ସରାଗର ବାସ୍ନାରେ ସେଇ ଶୁଖିଲା ଉଷ୍ମ ଭିତରେ ମନ, ଆଖି, ନାକ, ଚମ ସମସ୍ତେ ବୁଡ଼ିନଯାଇ ଗଡ଼ୁଥାନ୍ତି । ମନେ ହୁଏ ଏପରି କୌଣସି ପରିବେଶରେ ଏ ସୃଷ୍ଟିର ଅସ୍ମିତାରମ୍ଭ ହୋଇଥିବ ସତ! ସ୍ରଷ୍ଟା ମନର ଫେନାୟିତ ଉଚ୍ଛ୍ୱାସରେ ସର୍ବପ୍ରଥମେ ଚହଟିଇ ହୋଇଯିବାକୁ, ଗଳୁଟାଏ ବିଭାଜିତ ହୋଇଯିବାକୁ ସେ କାମନା କରିଥିବେ ସତ...'ସୋଽକାମୟତ୍ ବହୁସ୍ୟାଂ...'

ଫଗୁଣ କିନ୍ତୁ ଫୁଲର ମହକ ପରି ଉଭେଇଯାଏ । ସେ ଆସିଛି ବୋଲି ଅନୁଭବ କରୁ କରୁ ଚାଲିଯାଇଥାଏ । ସେ ଗୋଟିଏ ସରୋଗ-ବିନ୍ଦୁ ମାତ୍ର । ଜିଭ ଆଗରେ ମହୁର ସ୍ପର୍ଶ ପରି ସେ ଗୋଟାଏ କିମିଆ ସ୍ୱାଦ । ଦେହରେ ବାଜିଲେ

ସବୁ କଢ଼ ଶୀତେଇ ଉଠେଚି, ସବୁ ପାଖୁଡ଼ା ମେଲିଯାଆଁଚି । ଫଗୁଣ ହିଁ ଆଦ୍ୟ ଯୌବନର ସ୍ପର୍ଶ, ନୂତନ ପ୍ରଣୟର ମାଦକତା, ସୃଜନ ମନ୍ତ୍ରର ଆବିଷ୍କାର । ସେ ସଞ୍ଜୀବିତ କରେ, ଉଦ୍‌ଜ୍ଜୀବିତ କରେ, ଅହରହ ଘାଲେଇ ଶୋଇଯାଉଥିବା ଜଡ଼ ଧର୍ମକୁ ଉତକ୍ରମଣ କରି ପ୍ରାଣସ୍ପନ୍ଦନର ପ୍ରତିଷ୍ଠା କରେ । ଏଣୁ ସେ ଅସ୍ଥିର କରେ, ଉଚାଟ ସୃଷ୍ଟି କରେ, ବିଭାଜିତ ହୋଇଯିବାରେ ଅଦ୍‌ଭୁତ ବିଲୟର ଆନନ୍ଦ ଆଣିଦିଏ । ଏ ସାର୍ବଜନୀନ ଯୌବନର ନିଶାରେ ଗୋଠ ମାତି ଉଠେଚି, ଝଡିଆ ମଧ୍ୟ ମାତିଯାଏ । ଫଗୁଣ ଏକ ଉନ୍ମାଦନା, ଗୋଟାଏ ଉତ୍ତାପ, ଗୋଟାଏ ତରଳ ମଧୁର ଅଗ୍ନି ।

ମକରସଂକ୍ରାନ୍ତି ଛୁଇଁଲା ପରେ ସୂର୍ଯ୍ୟ ନିଜେ ଫଗୁଣାକ୍ରାନ୍ତ ହୁଅନ୍ତି । ପ୍ରତ୍ୟେକ ରଶ୍ମିରେ ଫଗୁଣ ବର୍ଷି ଆସେ ପୃଥିବୀ ଉପରକୁ । ଗୋଟିଏ ପ୍ରଦେଶରେ ଥାଇ ଆମେ ତାର ଅବତରଣ ପରିଷ୍କାର ଅନୁଭବ କରୁ । କିନ୍ତୁ ସୂର୍ଯ୍ୟ ଅହରହ ଛଅଟିଯାକ ଋତୁ ବର୍ଷା କରନ୍ତି । ଘୂର୍ଣ୍ଣାୟମାନ ପୃଥିବୀ କେଉଁ କେନ୍ଦ୍ରରେ କାହାକୁ ଗ୍ରହଣ କରେ । ତାର ଘୂର୍ଣ୍ଣନ ଛନ୍ଦୋବଦ୍ଧ; ଏଣୁ ଋତୁ ଚକ୍ରର ଆବର୍ତ୍ତନ ମଧ୍ୟ ଛନ୍ଦୋବଦ୍ଧ । ଫଗୁଣ ଗୋଟିଏ ସଂଚାରୀ ଢେଉ, ଗୋଟିଏ ଦୋଳାୟିତ ଫୁଲହାର । ନୃତ୍ୟରତା ପୃଥିବୀର ଅଙ୍ଗ ହଲିଗଲେ ସେ ବି ଝୁଲିଯାଏ ଦକ୍ଷିଣରୁ ଉତ୍ତରକୁ । କିନ୍ତୁ କେବେହେଲେ ଏଇ ହାର ତା ଗଳାରୁ ଛିଡ଼ି ପଡେନାହିଁ । କେବଳ ବସନ୍ତ ନୁହେଁ, ଛଅଟିଯାକ ଋତୁ ଅହରହ ସୂର୍ଯ୍ୟ ମଣ୍ଡଳରୁ ଅବତରଣ କରନ୍ତି ଏବଂ ଅହରହ ପୃଥିବୀ ତାଂକୁ ଗ୍ରହଣ କରେ । ସୂର୍ଯ୍ୟ ଅକୃପଣ ରଶ୍ମି ଦାନ କରନ୍ତି ପୃଥିବୀ କେଉଁ ମଣ୍ଡଳରେ ତାକୁ କିପରି ଭାବରେ ଗ୍ରହଣ କରେ । କାଚଖଣ୍ଡରେ ଶୁଭ୍ର ଆଲୋକ ସପ୍ତରଙ୍ଗରେ ବିଭାଜିତ ହେଲାପରି ବର୍ତ୍ତୁଳା ପୃଥିବୀ ଉପରେ ସ୍ୱତଃ ଛ'ଅଟି ଋତୁ ସୃଷ୍ଟି ହୋଇଯାଏ । ଏଣୁ ଫଗୁଣ ଝରିଯାଏ ନାହିଁ, ସେ ଲୁଚିଯାଏ କେବଳ । ତା ପିଛା ଧରିପାରିଲେ, ପୃଥିବୀ ଛନ୍ଦରେ ନର୍ତ୍ତନଶୀଳ ହୋଇପାରିଲେ ତାକୁ ଚିରଦିନ ପାଇହେବ । ସେ ଛନ୍ଦ କିନ୍ତୁ କାଳର ଛନ୍ଦ । ସେଥିରେ ପ୍ରବେଶ କରିଗଲେ ସ୍ଥାନର ଏକକତା ଆଉ ରହିବ ନାହିଁ । ଆଜି ସିମ୍‌ଲାରେ ତ'କିଛି ଦିନ ପରେ ଇରାନ୍‌ରେ ଫଗୁଣର ସନ୍ଧାନ କରିବାକୁ ହେବ । ନିଜେ ଯାଯାବର ହୋଇ ଏ ପଳାତକ ଇନ୍ଦ୍ରଧନୁର ହାରଟିକୁ ଗୋଡ଼େଇବାକୁ ହେବ ।

ଫଗୁଣର ସ୍ପର୍ଶରେ ମନରେ ଡେଣା ଲାଗିଯାଏ । ଉଡ଼ିବାକୁ ଇଚ୍ଛା ହୁଏ । ହଠାତ୍ ମନେହୁଏ ପ୍ରତ୍ୟେକ ସ୍ୱରରେ ସଂଗୀତ ଏବଂ ପ୍ରତିଟି ବାକ୍ୟରେ କବିତା

ଝରିଯାଉଛି । ବସନ୍ତରେ ଯୌବନ ଏବଂ ଯୌବନରେ ଏ ସମସ୍ତ ଫୁଲ୍ଲ ହୋଇଯାଆନ୍ତି । ଯାହାଁରି ସ୍ପର୍ଶରେ ମଣିଷ ତରୁଣାୟିତ ହୋଇଯାଏ । ତରୁଣ ଅବସ୍ଥାରେ କେହି କେବେ ଫଗୁଣକୁ ଅନୁଭବ କରିପାରେ ନାହିଁ, କାରଣ ସେ ସେତେବେଳେ ସ୍ୱୟଂ ଫଗୁଣ । ତା ଭିତରର ରଙ୍ଗ ଓ ମହକ ସେ ଚାରିଆଡ଼େ ବୁଣି ଚାଲିଥାଏ । ଏଣୁ ପ୍ରଚଣ୍ଡ ନିଦାଘରେ ମଧ୍ୟ ସେ ତାର ପରିବେଶକୁ ଫଗୁଣାୟିତ କରି ରଖିଥାଏ । ବୟସ ଯେତେ ଢଳି ଆସେ, ତାରୁଣ୍ୟ ଯେତେ ଅପସରିଯାଏ, ସେତିକି ପରିମାଣରେ ଫଗୁଣର ସଂଘାତ, ତା'ର ଚମକ, ତାର ନିଚ୍ଛକ ମଧୁରତା ଦେହ, ମନ ଓ ପ୍ରାଣକୁ ଆନ୍ଦୋଳିତ କରେ, ସ୍ମୃତିକେନ୍ଦ୍ରକୁ ମଥିତ କରେ । ଆଙ୍ଗୁଠି ସନ୍ଧିରେ ଜୀବନର ଫଗୁଣଗୁଡ଼ିକ ଝରିଯାଉଥିବାର ଅନୁଭବ ଆଣିଦିଏ । ଦୀର୍ଘଶ୍ୱାସରେ ଫଗୁଣେଟର ପୀଡ଼ା ମଧ୍ୟ ଝରିଯାଏ ଅହରହ । ଏପରି ନିଦାରୁଣ ଫଗୁଣ ଏତେ ସ୍ମୃତି-ମୁଖର, ଏତେ ଉଦାସ-ଦୀର୍ଘଶ୍ୱାସରେ ବୋଝେଇ ହୋଇଥିବା ଫଗୁଣ, ଏତେ ନିର୍ମମ ଫଗୁଣର ଆଘାତକୁ ମଧ୍ୟ ଆମେ ଅଭିସାରିକାର ଉତ୍କଣ୍ଠା ନେଇ ଅପେକ୍ଷା କରି ବସିଥାଉ । ସେ ଆସି ପ୍ରପୀଡ଼ିତ କରି ଚାଲିଯାଏ । ଦକ୍ଷିଣାରେ ଚଇତର ଧୂଳି ଉଡ଼େଇ ଦେଇ ସେ ଚାଲିଯାଏ । ଆମେ ଚଷମା ଲଗେଇ ତାକୁ ଖୋଜିବସୁ । ପରିଚିତ ମହୁଁରେ, ଓଠରେ, ଭୂରୁରେ, ଫଳରେ, ଫୁଲରେ ସେ ଗନ୍ଧ କିନ୍ତୁ ମିଳେନା, ସେ ସ୍ପର୍ଶ ଆଉ ମିଳେନା, ଆମେ ଫଗୁଣକୁ ଝୁରି ବସୁ । ଭଙ୍ଗା କାଚ କଣ୍ଢେଇକୁ ଯୋଡ଼ି ମନେପକାଉ ସେ ଦିନେ କେତେ ଚିକ୍କଣ ଥିଲା, କେତେ ଉଜ୍ଜ୍ୱଳ ଥିଲା । ଝରା ପାଖୁଡ଼ାଗୁଡ଼ିକୁ ଏକାଠି କରି ପୁଣି ବୃନ୍ତଚୂଡ଼ା ଗଢ଼ିବାକୁ ପ୍ରୟାସ କରୁ । କାଳବୈଶାଖୀ ହସିଦିଏ, ସଂସାର ହସିଦିଏ । ଆମେ ମଧ୍ୟ ଉଦାସରେ ଅଳ୍ପ ହସିଦେଉ । ବାସ୍ତବିକ, ଫଗୁଣ କେଡ଼େ ନିଦାରୁଣ ସତେ ।

ଫଗୁଣ କିନ୍ତୁ ଗୋଟାଏ ମଣ୍ଡଳରେ ଚିରକାଳ ଥାଏ । କୌଣସି ଭୂମଧ୍ୟସାଗରୀୟ ବନସ୍ପତି ତାକୁ ବାନ୍ଧି ରଖେ । କୌଣସି ସ୍ରଷ୍ଟାର ଗଭୀର ଗର୍ଭରେ ଅହରହ ମଳୟ ତା'ର ସୃଜନ-ମନ୍ତ୍ର ଗାଉଥାଏ । ସେ ଯାହାଁରି ସ୍ପର୍ଶରେ ତୂଳୀର ରଙ୍ଗ ବିଭିନ୍ନ ବର୍ଣ୍ଣରେ ଜଳିଉଠେ, ବୀଣାର ତାର ଭିତରେ ଗୁଞ୍ଜରି ଉଠେ କୋକିଳର ପଞ୍ଚମ । ଲେଖନୀରେ ଫୁଟି ଉଠେ ଫଗୁଣର ଅଫୁରନ୍ତ କବିତା । ମହାଭାରତକାର ବା ରାମାୟଣ-ରଚୟିତା ଫଗୁଣର ଅଶରୀରୀ ଆତ୍ମାକୁ ତାଙ୍କର ସୃଜନ କେନ୍ଦ୍ରରେ ବାନ୍ଧି ରଖିଥିଲେ ବୋଲି ସେ କାବ୍ୟକୃତିରେ ଜୀବନ୍ୟାସ ହୋଇଯାଇଛି । ସେଥିରେ ଚିରକାଳ ପ୍ରାଣର ସ୍ପନ୍ଦନ,

ସ୍ପନ୍ଦନର ଉଷ୍ମତା, ଉଷ୍ମତାର ମହକ ଏବଂ ମହକର ସ୍ୱାଦ ଲାଗି ରହିଛି । ତ୍ରିକାଳଦ୍ରଷ୍ଟା କବି ଫଗୁଣକୁ ଚିହ୍ନେ, ତାକୁ କେତେବେଳେ ଅପସରିଯିବାକୁ ସୁଯୋଗ ଦିଏ ନାହିଁ । ସେ ପୃଥିବୀ ପରି ପ୍ରସାରିତ ହୋଇ ରହିଥାଏ, ତା'ର ଛନ୍ଦରେ ସେହିପରି ନୃତ୍ୟଶୀଳ ହୋଇ ରହିଥାଏ । ତାର ବିଭିନ୍ନ ମଣ୍ଡଳରେ ଫଗୁଣ ଦୋଳାୟିତ ହେଉଥାଏ । ମାତ୍ର ଫଗୁଣ ଏକ ନିତ୍ୟବର୍ତ୍ତମାନ ପ୍ରକ୍ରିୟା । କାଳ ଏବଂ ସ୍ଥାନକୁ ଉତ୍କ୍ରମଣ କରିଥିବା ପୁରୁଷ ପାଇଁ ସେ ଏକ ସ୍ଥିର ବିନ୍ଦୁ । ସମଗ୍ର ଋତୁ ସମ୍ଭାରର ଏକ ସ୍ପନ୍ଦିତ ଚିତ୍ରପଟ । ସେ ତା'ର ସ୍ୱପ୍ନକ୍ରିୟ ସଙ୍କଳ୍ପରେ କେଉଁ ବନସ୍ପତିକୁ କେତେବେଳେ କେଉଁ ରଙ୍ଗରେ ଚିତ୍ର କରିଦିଏ । ଫଗୁଣ ଅପେକ୍ଷା କରିଥାଏ କୌଣସି ପଳାଶ ଏବଂ କୃଷ୍ଣଚୂଡ଼ାର ପାଖୁଡ଼ାରେ ତା'ର ଅଜସ୍ର ବର୍ଣ୍ଣସମ୍ଭାର ନେଇ, କୌଣସି ପରାଗ ଗର୍ଭରେ ତା'ର ମଧୁସମ୍ପଦ ନେଇ ।

ଚିରବାଞ୍ଛିତ ଫଗୁଣକୁ ସ୍ରଷ୍ଟା ବୁଣିଦିଏ ଆକାଶ, ମାଟି, ପାଣି ଓ ପବନରେ ଫଗୁଣ ବର୍ଷିଯାଏ ମଧୁମାନ୍ ସୂର୍ଯ୍ୟ ସୀମାଠାରୁ ମଧୁବତୀ ପୃଥିବୀ ପର୍ଯ୍ୟନ୍ତ । ଫଗୁଣ ଏକ କୁହୁକ-ସ୍ରଷ୍ଟାର କାଉଁରୀ କାଠିର ସ୍ପର୍ଶ । ସେ ତାକୁ ସ୍ପନ୍ଦିତ କରେ, ତାକୁ ଧାରଣ କରେ, କେତେବେଳେ ପୁଣି ଇଚ୍ଛା ହେଲେ ସୁମଧୁର 'ହବି' ପରି ସେ ଫଗୁଣଟାକୁ ପିଇଯାଏ । ଏ ସ୍ରଷ୍ଟା ନିଦାରୁଣ ନୁହେଁ, ସେ ମଧୁମାନ ସୂର୍ଯ୍ୟର ଜନୟିତା, ଫଗୁଣର ପୂଜ୍ୟ ପିତାମହ !!



## ଅଧାର

ବୁଢ଼ା ହେଲେ ସୁଦ୍ଧା ଆମର କୋକଭୟ ଯାଏନାହିଁ । ଏଣୁ ଅଧାରରେ ଆଖି ବୁଜି ଘୋଡ଼ିଘାଡ଼ି ହୋଇ ଶୋଇଯିବା ଆମର ଗୋଟାଏ ଦୁର୍ଲଙ୍ଘ୍ୟ ପ୍ରବୃତ୍ତି । କମ୍ବଳ ଭିତରେ ମିଟିମିଟି ଅନେଇ ବସ ପଡ଼ିରହୁ, କିନ୍ତୁ ଖୋଲାଖୋଲି ଅଧାରକୁ ଗ୍ରହଣ କରି ବିଚରଣ କରି ପାରୁନା କାରଣ ଆମେ ନିଶାଚର ନୋହୁ । ଆମେ ଅଧାରକୁ ଡରୁ, ତାକୁ ଘୃଣାକରୁ, ତାକୁ ନାଶ କରିବାକୁ ସବିତା ମଣ୍ଡଳରେ ଥିବା ଜ୍ୟୋତିଷ୍ମାନ୍ ପୁରୁଷଙ୍କୁ ଆବାହନ କରୁ । ଆମେ ସବୁ କୁଆଡ଼େ ଆଲୋକର ସନ୍ତାନ । ଏଣୁ ଅଧାରକୁ ଜୟ କରିବା, ତାକୁ ଦୂର କରିବା ଆମର ସହଜାତ କର୍ତ୍ତବ୍ୟ ।

କିନ୍ତୁ ଆଲୁଅକୁ ନିଜର ବୋଲି ଯେତେ ଯାବୁଡ଼ି ଧରିଲେ ମଧ୍ୟ ସେ ଅନିବାର୍ଯ୍ୟ ଭାବରେ ଗୋଟାଏ ପଶ୍ଚିମରେ ନିଶ୍ଚୟ ବୁଡ଼ିଯାଏ ଏବଂ ସେମିତି ଅନିବାର୍ଯ୍ୟ ଭାବରେ ଅଧାର ମାଡ଼ିଆସେ । ସେ ଦୁହେଁ କାହିଁ କେଉଁ ଅନନ୍ତ କାଳରୁ ଗୋଡ଼ିଆଗୋଡ଼ି ହୋଇ କେହି କାହାକୁ ଛୁଇଁ ପାରିନାହାଁନ୍ତି, ଟପି ପାରି-ନାହାଁନ୍ତି । ଆମେ ଚାହିଁଲେ ଯେ ଅଧାରକୁ ରୋକିଦେବୁ, ଏମନ୍ତ ନୁହେଁ । ଗୋଲାକାର ପୃଥିବୀ ତା' ମେରୁଦଣ୍ଡରେ ବୁଲୁଥିବା ପର୍ଯ୍ୟନ୍ତ ଏବଂ ସୂର୍ଯ୍ୟପିଣ୍ଡଟି ନ ଲିଭି ଜଳୁଥିବା ପର୍ଯ୍ୟନ୍ତ ଆଲୁଅ ଯେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ ଅଧାର ମଧ୍ୟ ସେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ ।

କୌଣସି ଏକ ଆଦିମ ନିସ୍ତରଙ୍ଗ ଅଧାରରୁ ହିଁ ବୋଧହୁଏ ଆଲୁଅର ଜନ୍ମ । ସେ ଏକ ବିଦ୍ରୋହ, ଏକ ଉଦ୍‌ବର୍ତ୍ତନ । ଏଣୁ ତା'ର ଦୁର୍ଭେଦ୍ୟ ବ୍ୟୂହ ଭିତରକୁ ତାକୁ ଫେରେଇ ନେବାପାଇଁ ଅଧାର ତା'ପଛରେ ଗୋଡ଼େଇ ଚାଲିଛି । ପଳାତକ ଆଲୁଅ ଅମାନିଆ ଶିଶୁ ପରି ହସରେ ଫାଟି ପଡୁଛି, ବୁଣି ହୋଇ-ଯାଉଛି । ଶେଷରେ ଏ ସନ୍ତାନଟି ସେଇ ଆଦିମ ଜନୟିତ୍ରୀର କୋଡ଼ ଭିତରେ ହିଁ ବିଲୟ ଲଭିବ । ଅନନ୍ତ ଆକାଶର ଅସଂଖ୍ୟ ଆଲୋକ ବିନ୍ଦୁ ଲିଭିଯିବେ । ନିସ୍ତରଙ୍ଗ ଅଧାର ପୁଣି ଘାଲେଇ ଶୋଇଯିବ ଅନନ୍ତକାଳ ପାଇଁ ।

ଏ ସବୁ ନ ଜାଣି ମଧ୍ୟ ପିଲାଟିଦିନୁ ଆମେ ଅଧାରକୁ ଡରୁ, କାରଣ ତା' ଭିତରେ ସବୁ ସମ୍ଭବ । ସୃଷ୍ଟି ଆରମ୍ଭରେ ଯେମିତି କେବଳ ଗୁଡ଼ିଏ ଉପାଦାନ ଥିଲା କିନ୍ତୁ ବସ୍ତୁ ନଥିଲା, ଏଣୁ ଯେ କୌଣସି ବସ୍ତୁର ସମ୍ଭାବନା ହିଁ ଥିଲା ସେମିତି ରାତିର ଅନିଶ୍ଚିତତା । ସେଇଟା ଭୂତ ନ ହୋଇ ମଣିଷ ହୋଇପାରେ,

ଘୋଡ଼ା ନ ହୋଇ ଗାଡ଼ି ହୋଇପାରେ । ସେତିକିବେଳେ ଡାହାଣୀ, ଚିରୁଗୁଣୀ, ମହାମଣ୍ଡିଙ୍କ ପ୍ରେତ, ଯକ୍ଷ, ରକ୍ଷ, ପିଶାଚ ସବୁ ଫିଟି ଆସନ୍ତି । କଳ୍ପନା କରୁ କରୁ ସେ ଆସି ଠିଆ ହୋଇଯାଆନ୍ତି । ଆମେ କିଛୁ ଚାହୁଁ ନା ଏମିତି ରୋକ୍ ଠୋକ୍ କଥା । ଏଣୁ କିଛି ନ ଭାବି ହୁଏତ ଶୋଇଯାଉ । ଭୟ ଆମର ଅତି ଆଦିମ ମୌଳିକ ପ୍ରବୃତ୍ତି ।

ଆମେ ଅନ୍ଧାରକୁ ଡରୁ ସତ କିନ୍ତୁ ସତ୍ୟକୁ ମଧ୍ୟ ଡରୁ । ତାକୁ ଅନେକ ପ୍ରକାର ଆବରଣରେ ଘୋଡ଼େଇ ମୁଖା ପିନ୍ଧେଇ ରଖିଥାଉ । ଏ ବିରାଟ ରଙ୍ଗମଞ୍ଚରେ ସୂର୍ଯ୍ୟଦୀପ ଅହରହ ଜଳୁଥାଏ । ଆମେ ତା'ଆଲୁଅରେ ଚମତ୍କାର ଅଭିନୟ କରୁ । ଅନେକ ବେଶ ପୋଷାକ, ଛୁଇଁ ଛୁଟାର ଅଟାଟୋପ ହାକିମ, ଅମଲା, ମନ୍ତ୍ରୀ, ସନ୍ତ୍ରୀଆଦିଙ୍କର ବିଭିନ୍ନ ଭାବଭଙ୍ଗୀର ପରିପାଟି ! ଜଣେ ଜଣେ ଏକାଧିକ ଭୂମିକାରେ ଅଭିନୟ କରି କରି କ୍ଳାନ୍ତ ହୋଇ ପଡ଼ନ୍ତି । ସଙ୍ଗୀତ, ସାହିତ୍ୟ, ସଭାସମିତି ଓ କଳା ବିଜ୍ଞାନର ବିଭିନ୍ନ ଭୂମିକାରେ କୋଟି କୋଟି ଅଭିନେତା ଏ ରଙ୍ଗମଞ୍ଚରେ ନାଚି ଯାଆନ୍ତି । ସୂର୍ଯ୍ୟଦୀପ ମଧ୍ୟ କ୍ଳାନ୍ତ ହୋଇ-ଯାଏ, ତା'ର ଅପଲକ ଆଖି ବୁଜି ହୋଇଯାଏ । ଯା'ପରେ ଆସେ ଅନ୍ଧାର, ସମସ୍ତଙ୍କୁ ଘୋଡ଼େଇ ଦେଲାପରି, ସମସ୍ତଙ୍କୁ ପରସ୍ପରଠାରୁ ଲୁଚେଇ ଦେଲାପରି ଗୋଟିଏ ଆବରଣ । ଏଇଟା ପ୍ରେକ୍ଷାଳୟ । ଏଇଠି ସବୁ ଅଭିନେତା ଲାଜ ଛାଡ଼ି ମୁଖା ଫିଙ୍ଗେଇ ପକାନ୍ତି । କିଏ ଝାଳ ପୋଛେ କିଏ ବିଡ଼ି ଟାଣେ ରାମଲୀଳାର ହନୁମାନ ତା' ଲାଙ୍ଗୁଡ଼ ଖସେଇ ଥୋଇଦିଏ ।

ଅନ୍ଧାରରେ ସମସ୍ତେ ତାଙ୍କ ମୌଳିକ ସଭାକୁ ଫେରିଆସନ୍ତି । କିଛି ଲୁଚେଇବାର ବା ଘୋଡ଼େଇବାର ପ୍ରୟୋଜନ ନ ଥାଏ । ଅଭିନୟ ନ କରି ଖୁବ୍ ନିବିଡ଼ ଭାବରେ ମଣିଷ ବଞ୍ଚେ ଏଇ ଅନ୍ଧାରରେ । ତାକୁ ଅନେକ ଉଶ୍ୱାସ ଲାଗେ, ସ୍ୱାଭାବିକ ଲାଗେ ଏବଂ ହୃଦମାତେ କେମିତି ଏ ନିରାଟ ସତଗୁଡ଼ାକୁ ଅଶ୍ଳୀଳ କହି ସେ ଘୋଡ଼େଇ ପକାଉଥିଲା ଗୋଟାଏ ସାମାଜିକ ଅଳୁଅର କୋଳାହଳ ଭିତରେ । ଏଇ ଅନାବୃତ ନିଛକ ମୁହୂର୍ତ୍ତଗୁଡ଼ାକ ଜୀବନର ମୌଳିକ ଉପାଦାନରେ ସମୃଦ୍ଧ, ବଞ୍ଚିବାର ସତ୍ୟତାରେ ମଗ୍ନ ସର୍ଯ୍ୟନ୍ତ ଭରପୂର । ଆଲୁଅଠାରୁ ଅନ୍ଧାର ବେଶି ସତ୍ୟ, ବେଶି ଘନିଷ୍ଠ, ବେଶି ଆପଣାର । ଆମେ ଅନ୍ଧାରକୁ ହୁଏତ ଭୟ କରୁନା । ଆମେ ତାକୁ ଭଲ ପାଉ । ମନେ ମନେ ଝୁରୁଥାଉ । ଅଭିନୟର ଭିଡ଼ାଓଟରା ଭିତରେ ମଧ୍ୟ ଅନ୍ଧାରକୁ ଲୋଡ଼ୁଥାଉ । ଆଲୁଅ ଭଳି ଅନ୍ଧାର, ଏତେ ନିର୍ମମ ନୁହେଁ । ସେ ଖିନ୍‌ଭିନ୍ ସବୁ ଖୋଲି ଦେଖାଏନାହିଁ । ଘୋଡ଼େଇ

ପଢ଼ାଏ, ନିବିଡ଼ ଭାବରେ ଅନୁଭବ କରିବାକୁ ସୁଯୋଗ ଦିଏ । ଆମ ଭିତରେ ଯଦି ଆଲୁଅର ଉପନିବେଶ କିଛି ଦିଶେ, ସେ ସବୁ ଯାଯାବର ସଂସ୍ଥା । ତା'ର ନୂଆ ବାସିନ୍ଦା ସବୁ ଶ୍ୱେତାଙ୍ଗ ଶାସକ। କିନ୍ତୁ ଭିଟାମାଟିକୁ ଲାଗି ଯେତେ ସବୁ ମଳିଛିଆ ଛାଇଭଳି ନୀରବରେ ସଞ୍ଚରି ଯାଉଛନ୍ତି, ଯାହାଙ୍କୁ ଗଣି ହୁଏ-ନାହିଁ, ବାରି ହୁଏ ନାହିଁ, ଯେଉଁମାନେ ସେଇ ମାଟିଭଳି ପୁରୁଣା ସେମାନେ ସବୁ ଆମର। ଆମ ଭିତରେ ଆଲୁଅ ପଶିଗଲେ, ଆମେ ଗଛମୂଳେ, ବୁଦାମୂଳେ ଲୁଚିଯାଉ । ସେ ଓହରିଗଲେ, ଆମେ ପରସ୍ପରର ଗନ୍ଧ ବାରି ପାଖେଇ ଆସୁ । ପ୍ରାଚୀନ ଅନ୍ଧାରର ସନ୍ତାନ ଆମେ । ଅନ୍ଧାର ଆମର ଜାୟା ଓ ଜନନୀ, ତାକୁ ଭୟକରିବା ଏକ କୁସଂସ୍କାର ।

ନିଃସଙ୍କୋଚ ଅନ୍ଧାର ଭିତରେ ଆମେ ସମସ୍ତେ ଗୋଟିଏ ଗୋଟିଏ ଦ୍ୱିପଦ ପ୍ରାଣୀ । ଆମ ଚାରିଆଡ଼େ ଆମର ଅସଂଖ୍ୟ ଲୋମଶ ପୂର୍ବପୁରୁଷଙ୍କ ଉଷ୍ମ ଆମେ ସେଇଠି ଅନୁଭବ କରୁ । ଆମକୁ କିଛି ହୁଏତ ଦିଶେନାହିଁ କିନ୍ତୁ ସବୁ ଅନୁଭବ କରିହୁଏ । ଚମଡ଼ାଳକୁ ସବୁ ଅନ୍ଧାର । ସେହି ଖୋଳଭିତରେ ଆମର ଅନ୍ତ୍ରନାଡ଼ୀ ସ୍ପନ୍ଦିତ ହୁଅନ୍ତି, ଖାଦ୍ୟ ପରିପାକ ହୁଏ, ପ୍ରାଣବାୟୁ ଯାତାୟାତ କରେ । ଏଣୁ ଅନ୍ଧାରରେ ହିଁ ନିଜକୁ ଦରଦରୁ ହେବା ଆମେ ଅନୁଭବ କରୁ, ଜଠରରେ ନିବିଡ଼ ତାତି ଅନୁଭବ କରୁ ।

ଆଲୁଅରେ ଦୃଷ୍ଟି ଫେରିଆସେ, ବ୍ୟବଧାନ ଫେରିଆସେ । ଦୃଷ୍ଟିରେ ଦୂରତା ଅନିବାର୍ଯ୍ୟ, କିନ୍ତୁ ସ୍ପର୍ଶରେ ବ୍ୟବଧାନ ନାହିଁ କି ଦୂରତା ନାହିଁ । ତୃତୀୟ ସତ୍ତାର ସମ୍ଭାବନା ନାହିଁ । ସ୍ପର୍ଶ ଆଉ ଏକ ପ୍ରକାର ଦୃଷ୍ଟି । ପ୍ରତି ଲୋମକୂପରେ ସହସ୍ରାକ୍ଷ ପରି ଉତ୍ତାପକୁ ପିଇହୁଏ, ଶିହରଣକୁ ଶୋଷି ହୁଏ । ଆଲୁଅ ଲିଭିଗଲେ ଆଖି ବୁଜିଯାଏ ସତ କିନ୍ତୁ ଆଉ ଚାରିଟା ଇନ୍ଦ୍ରିୟ ମନକୁ ମିଶେଇ ମାତିଉଠନ୍ତି । ଅନ୍ଧାରରେ ଗୁଞ୍ଜରଣ ବେଶି ସଙ୍ଗୀତମୟ, ସ୍ୱାଦ, ଗନ୍ଧରେ ଆହୁରି ଅନେକ ମାଦକତା । ଅନ୍ଧାର ସବୁ ସାଉଁଟି ଆଣେ, କେନ୍ଦ୍ରୀଭୂତ କରିଦିଏ, ଗଭୀରକୁ ଟାଣିନିଏ, ଆଲୋକ ବିକ୍ଷିପ୍ତ କରିଦିଏ ବିସ୍ତୃତ ବିକେନ୍ଦ୍ରିତ କରିଦିଏ । ଆଲୋକ ଅପେକ୍ଷା ଅନ୍ଧାର ବେଶି ଜୀବନଧର୍ମୀ, ବେଶି ବାସ୍ତବ ।

ବାସ୍ତବ ହେବା କିଛି ଲାଜ କଥା ନୁହେଁ । ନିଜେ ଯାହା, ତାକୁ ସହଜ ଭାବରେ ଖୋଲାଖୋଲି ମାନିନେବା ମିଥ୍ୟା ମଧ୍ୟ ନୁହେଁ । ତାକୁ ମିଥ୍ୟା ବୋଲି କହିଦେଇ ପରିହାର କରିଦେବା କିଛି ଖେଳଘର ମଧ୍ୟ ନୁହେଁ । ପ୍ଲାଟୋ କହିଲାଭଳି ଆମେ ସବୁ ଅନ୍ଧାରରେ ଗୁମ୍ଫାଭିତରେ ବନ୍ଦୀ ଥାଉ । ଆମ ଭିତରୁ ଜଣେ

ଫିଟିଯାଇ ଆଲୋକର ସନ୍ଧାନ କରେ । ସେହିଭଳି 'ପ୍ରମିଥିଅସ୍' ମାନଙ୍କୁ କେହି ଅସ୍ୱୀକାର କରନ୍ତିନାହିଁ କାରଣ ମୂଳତଃ ଆଲୋକକୁ କେହି ଅସ୍ୱୀକାର କରନ୍ତିନାହିଁ । କିନ୍ତୁ ଯେତେବେଳେ ସେଇ ଆଲୋକ ସନ୍ଧାନୀମାନେ ଆସି ଅନ୍ଧାର ରାଜ୍ୟରେ ବିପ୍ଳବର ସୂତ୍ରପାତ କରନ୍ତି ଆମକୁ ଟିକିଏ ହସ ମାଡ଼େ । ଆସାମର ଚା'ବଗିଚାରେ ଚାରିମାସ କାଟି ଆସିବାପରେ ଓଡ଼ିଆ କୁଲିସର୍ଦ୍ଦାର ଘରେ ଆସି ହିନ୍ଦି କହେ, ଭାନ କରେ ଯେ ସେ ଆଉ ଓଡ଼ିଆ ନୁହେଁ ଏଠିକାର ଭାଷା ତା'ର ଆଉ ପସନ୍ଦ ନାହିଁ । ଉଷା, ଅଗ୍ନି ବା ସବିତା ମାଧ୍ୟମରେ ବହୁବାର ଆଲୋକର ଆବାହନ କଲେ ସୁଦ୍ଧା ମଣିଷର ମୌଳିକ ସତ୍ୟ ବିଷୟରେ ବେଦ ନୀରବ ନୁହେଁ । ପୁରାଣର ବିଶ୍ୱାମିତ୍ର ବହୁ ତପସ୍ୟା ପରେ ମଧ୍ୟ ମେନକା ପାଖରେ ସମସ୍ତ ଆବରଣ ତଳେ ଲୁଚି ରହିଥିବା ନିଜର ଅନାବୃତ ସତ୍ତାକୁ ସ୍ୱୀକାର କରନ୍ତି ।

ସେମାନେ କହିବା-ଅନୁସାରେ ଏ ସତ୍ତାଟି କୁଆଡ଼େ ଆମର ଜାନ୍ତବ ପରମ୍ପରା ଏବଂ ସେଥିପାଇଁ ଆମକୁ ଲଜ୍ଜିତ ହେବା ଉଚିତ । ଲଜ୍ଜିତ ହେବାକୁ ଆମର ଆପତ୍ତି ନାହିଁ କିନ୍ତୁ କାହିଁକି ଏବଂ କାହା ପାଖରେ? ଯଦି ସବୁଠାରେ ଏଇ ଜନ୍ତୁଟି ହିଁ ଅନିବାର୍ଯ୍ୟ ସତ୍ୟ, ତା'ପାଇଁ ଲଜ୍ଜା କରିବାର ପ୍ରୟୋଜନ କାହିଁ? ଉଲଙ୍ଗ ରାଜ୍ୟରେ ତ'ପରିଧେୟର କିଛି ଅର୍ଥ ନାହିଁ ଏବଂ ଅର୍ଥ ନାହିଁ ସେପରି କୌଣସି ଅଭିନୟର । ଜନ୍ତୁ ଜୀବନରେ ଅସଂଖ୍ୟ କ୍ଷୁଧା ଏବଂ ସେସବୁତିକ ଖୁବ୍ ସ୍ୱାଭାବିକ । ସେସବୁତିକୁ ଲିଭେଇ ହୁଏନାହିଁ, ହୁଏତ ସନ୍ତୁଷ୍ଟ ମଧ୍ୟ କରିହୁଏନାହିଁ । ତା'ବୋଲି ସେମାନଙ୍କୁ କମ୍ବଳ ଘୋଡେଇ ଦେଇ ଉପରେ ସଫେଇ ଦେଖେଇ ହେବା ମିଥ୍ୟାଚାର । ଯେତେ ଡାଳପତ୍ର କାଟିଲେ ମଧ୍ୟ ଉଦ୍ଭିଦ ମରିଯାଏନାହିଁ, ତା'ର ଉଲଙ୍ଗ ଚେରଗୁଡ଼ିକ ଅନ୍ଧାର ମାଟି ଭିତରେ ମୁହଁ ବୁଡ଼େଇ ପ୍ରାଣରସ ଟାଣୁଥାନ୍ତି । ପୁଣି ଶାଖା ମେଲି ଯାଏ, ପତ୍ରକଢ଼ ଉଭାରି ଆସନ୍ତି । ଚେର ଲଗାତ୍ ଭିଡ଼ି ଫୋପାଡ଼ିଦେଲେ ଯେଉଁ ମାଟିଫିଟଟିକୁ ସେ ସହସ୍ରେ ସୂତ୍ର ଭୁଡ଼େଇ ଧରି ରଖିଥିଲା, ସେ ନିରାଧାର ଖସି ପଡ଼ିବ । ଜୀବନର ସମସ୍ତ କ୍ଷୁଧା ନିର୍ବାପିତ ହୋଇଗଲେ କେବଳ ନିସ୍ପନ୍ଦ ଖାଉ ପଡ଼ି ରହିବ । ଜ୍ୱଳନର କ୍ରିୟା ହିଁ ଯଦି ଜୀବନ ହୁଏ, ତେବେ କ୍ଷୁଧାନଥାଇ ବଞ୍ଚିବା ସମ୍ଭବ ନୁହେଁ । ବଞ୍ଚିବାକୁ ହେଲେ, ଜନ୍ତୁଟି ହିଁ ବଞ୍ଚେ । ତା'ଉପରେ ଯେତେ ରଙ୍ଗ ମଡ଼େଇ ଯେତେ ମୁଖା ଝୁଲିଲେ ମଧ୍ୟ ସେ ନିର୍ଲ୍ଲଜ ଭାବରେ ସେଇ ଜନ୍ତୁ ।

ଅନ୍ଧାର ଏଇ ଆଦିମ ଜନ୍ତୁଟିକୁ ଲୁଚାଇ ଦିଏ । ଦିନ ଆଲୁଅରେ ଯେଉଁ ଜଟିଳରେ ସେ କଥା ପଡ଼ିଥିଲା, ରାତିରେ ସେଇଟା ଫିଟିଯାଏ ଏବଂ ଫିଟିଯାଏ ବୋଲି ରକ୍ଷା ହୋଇଯାଏ । ନାରୀ ଏବଂ ପୁରୁଷ ନିରାବରଣ ପରସ୍ପରକୁ ସ୍ୱୀକାର କରନ୍ତି । ସୃଷ୍ଟିର ଆଦିମ ଅନୁଶାସନ ଜାରି ରହେ । ନଚେତ୍ କେବଳ ଅଭିନୟ ଏବଂ ମିଛିମିଛିକା ଖେଳ ଭିତରେ ଜୀବନ ସରିଯାଆନ୍ତା । ଜରାୟୁରେ ଅମାପ ଅନ୍ଧାର ଏବଂ ମୃତ୍ୟୁର ଅନ୍ଧାର ଅପରିସୀମ । ଏ ଦୁଇଟି ବାହୁବେଢ଼ା ଭିତରେ ମଣିଷର ଚପଳତା, ଆଲୁଅ ଅନ୍ଧାରର ଲୁଚକାଳି ଭିତରେ ସରିଯାଏ । ଅନ୍ଧାରରୁ ଆସି ଅନ୍ଧାର ଭିତରେ ଆମେ ପୁଣି ପଶିଯାଉ । ଜଗତର ଉଭୟ ପାଖେ ଅନ୍ଧାର । କେବଳ ଏ ପାଖରୁ ସେ ପାଖକୁ ଯିବା କଥା ।

ଆଲୁଅ ନିଜେ ଗୋଟାଏ ବିଦ୍ରୋହର ଶୋଭାଯାତ୍ରା । ଯେପରି ଆଲୁଅ ପଛରେ ଲୁଚାହେଇବା ମଧ୍ୟ ଗୋଟିଏ ଦିଗ-ବାରଣ ବିଦ୍ରୋହ । ଆମର ଗୋଟାଏ ପ୍ରକାର ଅଭ୍ୟାସ ହୋଇଗଲାଣି ଆଲୁଅକୁ ଦେଖି ବିଭୋର ହୋଇଯିବା । ଉଷା ସୁନ୍ଦର, ସୂର୍ଯ୍ୟ ସୁନ୍ଦର, ଉଦ୍ଭିଦ, ମଣିଷ, ଫୁଲ, କଢ଼ ଏବଂ ମଣିଷ ଛୁଆ ଏ ସବୁ ସୁନ୍ଦର । ଦିନବେଳେ ମମତାର ଫୁଲ-କିଆରୀ ଯେତେ ବଢ଼ିଯାଏ, ବିସ୍ତୃତ ହୋଇଯାଏ ଆମକୁ ସେତେ ଭଲ ଲାଗେ, ସେତେ ଖୁସି ଲାଗେ । ଆଲୋକ ପାଇଁ ଆମ ଭିତରେ ଅନେକ ଓକିଲାତି; ଏଣେ କିନ୍ତୁ ଅନ୍ଧାରର ଆକର୍ଷଣ ଅନିବାର୍ଯ୍ୟ । ଅନ୍ୟ ଜନ୍ତୁ ଅପେକ୍ଷା ଆମେ ବେଶି ଦେଖୁ, ବେଶି ବୁଝୁ । ଆମ ବୁଦ୍ଧିର ଫାଟକ ଅନେକ ପ୍ରଶସ୍ତ । ଏଣୁ ଆମ ଭିତରକୁ ଅନେକ ପରିମାଣ-ରେ ଆଲୁଅର ଅନୁପ୍ରବେଶ କରେ; ଉପନିବେଶ ସବୁ ପ୍ରତିଷ୍ଠିତ ହୁଏ । ଆମେ ଦୁଇଭାଗ ହୋଇ ଯାଉ । ଦୁଇଭାଗ ଛାଡ଼ି ଶହେଭାଗ ହେଲେ ମଧ୍ୟ ଆପତ୍ତି ନ ଥିଲା । କିନ୍ତୁ ସେଇ ପରିମାଣରେ ଶଠତା ଆମ ଭିତରକୁ ପଶିଆସେ । ପଶିଆସେ ଦ୍ୱନ୍ଦ୍ୱ ଏବଂ ସଂଶୟ । ଆମେ ପ୍ରକୃତରେ ଆଲୁଅର ନା ଅନ୍ଧାରର, ଏ ବିଷୟରେ ସନ୍ଦେହ ଆସିଯାଏ । କଥିତ ଅଛି ଯେ ଜଣେ ଦାର୍ଶନିକ ଏକଦା ସ୍ୱପ୍ନ ଦେଖିଲେ, ସେ ଏକ ପ୍ରଜାପତି । ତା'ପରେ ତାଙ୍କର ସମସ୍ୟା ହେଲା ଜାଣିବାକୁ ଯେ ସେ ପ୍ରଜାପତି ହୋଇ ମଣିଷ ହେବାର ସ୍ୱପ୍ନ ଦେଖୁଛନ୍ତି ନା ମଣିଷ ହୋଇ ପ୍ରଜାପତି ହେବାର ସ୍ୱପ୍ନ ଦେଖୁଛନ୍ତି । ସମାଧାନର ପଥ ଖୋଜି ଖୋଜି ସେ ହୁଏତ ଚାଲିଯାଇଥିବେ । ଆମର ପ୍ରାୟ ସେଇ ସମସ୍ୟା । ଏ ଦୋଭାଷୀ ମୁଲକରେ ଆମେ କାହାର? ଅନ୍ଧାରର ନା ଆଲୁଅର? ପକ୍ଷେ ଆପୋଷବାଲା କହନ୍ତି ଆମେ ଉଭୟର । ଆଉପକ୍ଷେ ବିରକ୍ତ ହୋଇ କହନ୍ତି ଆମେ କାହାରି ନୋହୁ । ଏମିତି ଟଣାଓଟରା ଭିତରେ କିନ୍ତୁ ସ୍ୱୀକାର କରିବାକୁ

ସତ୍ୟେ ଯେ ଆମେ ଆଲୁଅରେ ଯାହା, ଅନ୍ଧାରରେ ତାହା ନୋହୁଁ ଏବଂ ଅନ୍ଧାରରେ ଯାହା ଆଲୁଅରେ ତାହା ନୋହୁଁ । ଆମେ ଗୋଟାକରେ ବଞ୍ଚୁ ଏବଂ ଅନ୍ୟଟିରେ ଅଭିନୟ କରୁ । କିନ୍ତୁ ଏତେ ତନ୍ମୟ ତଦ୍‌ଗତ ଭାବରେ ଅଭିନୟ କରୁ ଯେ ଏ ଅଭିନୟ ହିଁ ସତ୍ୟ ଏବଂ ବଞ୍ଚିବା ଏକ ଅଭିନୟ ବୋଲି ମନେ ହୁଏ ।

ଅନ୍ଧାର ସ୍ଥିର ସମୁଦ୍ର ପରି ଗୋଟାଏ ସ୍ଥିତି—ଅକଳନୀୟ, ନିସ୍ପନ୍ଦ, ପ୍ରାଚୀନ । ଆଲୁଅ ଏକ ବିସ୍ଫୋରଣ, ଦୁର୍ଦ୍ଦମନୀୟ, ଛନ୍ଦମୟ, ଗତିଶୀଳ— ଏଣୁ ନୂତନ । ଅବିଚଳିତ ଅନ୍ଧକାର ହିଁ ପ୍ରକୃତିରୂପା କାଳରାତ୍ରୀ । ତା'ର ନିସ୍ପନ୍ଦ ଜଠରରୁ ଗ୍ରହ, ଚନ୍ଦ୍ର, ତାରା, ବୀଜକୋଷର ଅଙ୍କୁର ପରି ଜନ୍ମ ହୁଅନ୍ତି ; ଜନ୍ମ ହୁଅନ୍ତି ଏ ଉଦ୍‌ଭିଦ, ପଶୁ, ପକ୍ଷୀ, ଏବଂ ମଣିଷ । ସେ ଆଦି ଜନୟିତ୍ରୀ ; ଜଗଦ୍ଧାତ୍ରୀ । ତା'ରି କୋଳରେ ସବିତା ସ୍ପନ୍ଦିତ ହୁଅନ୍ତି, ପ୍ରାଣ ସ୍ପନ୍ଦିତ ହୁଏ, ଜୀବନର ଅଭିବୃଦ୍ଧି ହୁଏ, ଜୀବ ବହୁଗୁଣିତ ହୁଏ ... ସେ ଅଖିଳ ବ୍ରହ୍ମାଣ୍ଡର ଏକ ମାତ୍ର ଜାୟା —ତା'ର ନିସ୍ପନ୍ଦ ଶୀତଳ ଜଠରରେ ସୂର୍ଯ୍ୟ ନିର୍ବାପିତ ହୁଏ, ସୃଷ୍ଟି ସମାହିତ ହୁଏ, ଗତି ସ୍ତମ୍ଭିତ ହୁଏ, ବିଲୟ ହୁଏ ଚେତନାର ସ୍ଫୁରଣ ସେ କାଳରାତ୍ରି, ବିଶ୍ୱବ୍ରହ୍ମାଣ୍ଡର ଶୀତଳ, ସମାଧି-ଗର୍ଭ ।

ଆଲୁଅ ଗୋଟିଏ ବିନ୍ଦୁ, ଗୋଟିଏ ରେଖା, ଗୋଟିଏ ପ୍ରବାହ । ସେ ଏକକୁ ବହୁଧା ବିଭକ୍ତ କରେ । ନିଜେ ଦିଶେ ନାହିଁ କିନ୍ତୁ ସମସ୍ତଙ୍କୁ ଦେଖାଏ । ଅନ୍ଧାର ଏକ ସ୍ଥିତି, ଏକ ସମାଧି । ତା' ଭିତରେ ସବୁ ପୁଣି ଏକୀଭୂତ ହୁଅନ୍ତି । ସେ ହିଁ ପ୍ରତ୍ୟୟ ଆଣି ଦିଏ 'ନେହ ନାନାସ୍ତି କିଂଚନ' । — ସେ ସମସ୍ତଙ୍କୁ ଲୁଚେଇ ଦିଏ, ପ୍ରତ୍ୟେକଙ୍କୁ ଏକାକୀ କରିଦିଏ । ବାହାରର ସମସ୍ତ ଗ୍ରହ, ଚନ୍ଦ୍ର, ତାରା ଓ ପୃଥିବୀ ମନରାଜ୍ୟ ଭିତରକୁ ଚାଲି ଆସନ୍ତି । ଅନ୍ଧାରରେ ଆମେ ଜଗତ୍‌କୁ ଧାରଣ କରୁ, ଏଣୁ ଆଲୁଅକୁ ମଧ୍ୟ ଧାରଣ କରୁ କିନ୍ତୁ ଆମ ଭିତରେ ଗୋଟିଏ ଖୋଲ ଅଛି । ସେ ଆମକୁ ଏକାକୀ ରହିବାକୁ ଦିଏନାହିଁ । ଆମେ ଆଉ ଜଣକୁ ଖୋଜୁ । ସମସ୍ତ ସତ୍ତା ଅନ୍ଧାରରେ ବୁଡ଼ିଯାଏ, ବୁଡ଼ିଯିବାକୁ ସୁଖ ପାଏ କାରଣ ତା'ର ଉପାଦାନ ହିଁ ଅନ୍ଧାର । କିନ୍ତୁ ଏଇ ଗୋଟିଏ ମାତ୍ର ଚଞ୍ଚଳ ବିନ୍ଦୁ ଆମ ଭିତରେ ବିଦ୍ରୋହ କରେ, ଉଜାଗର ଢେଉ ତୋଳେ ଏବଂ ସେଇ ବିନ୍ଦୁଟି ହିଁ ବୋଧହୁଏ ଆଲୋକର କେନ୍ଦ୍ର ତାର ମୂଳ ନିବେଶ । ଆମେ ଆଲୋଡ଼ିତ ହେଉ, ବହୁଧା ବିଭକ୍ତ, ସମ୍ପର୍କିତ ହେବାକୁ କାମନା କରୁ, ଏବଂ ଆଲୁଅରେ ହିଁ ଏ ବିଭାଜନ ସମ୍ଭବ । ଏଣୁ ବହୁରୂପା ସମଷ୍ଟିକୁ ଭଲ ପାଇବାକୁ ଯାଇ ଆଲୁଅର ପୃଷ୍ଠଭୂମିଟାକୁ ଭଲ ପାଇଯାଉ, ବ୍ୟକ୍ତିଟିକୁ ଭଲ

ପାଇବାକୁ ଯାଇ ତା'ଘର,ବାଡ଼ି,ଅଂବଗଛୁ ଆଦିକୁ ଭଲ ପାଇଲାପରି । ବୋଧହୁଏ ଏ ଭଲପାଇବା ହେତୁରୁ ହିଁ ବ୍ୟକ୍ତିଟି ବିସ୍ତୃତ ହୋଇ ପ୍ରତିଫଳିତ ହୁଏ । ପାଖ ଆଖ ବସ୍ତୁ ମଧ୍ୟ ତା'ର ଚୁମ୍ବକର ଟାଣ ପାଇ ନିଜେ ଟାଣନ୍ତି । ସେଇଭଳି ଆଲୁଅ । ସେଥିରେ ଆମେ ଫସାରକୁ ଦେଖୁ,ଫସାରକୁ ଭଲପାଉ ଏବଂ ସେଇକ୍ରମରେ ଆଲୁଅକୁ ମଧ୍ୟ ଭଲ ପାଇଯାଉ ।

ଆମେ ସୂର୍ଯ୍ୟବଂଶୀ ନୋହୁଁ,ଆଲୁଅ ଆମର ମୌଳିକ ଉପାଦାନ ନୁହେଁ । ଆମେ ଶହେରେ ଅନେଶତ କେବଳ ଅନ୍ଧାର । ବାକି ଯେଉଁ 'ଏକ'ଟି ଆମେ ବୁଝି ପାରୁନାହୁଁ,ତାକୁ ମଧ୍ୟ ଆଲୁଅ କହିବା ସହଜ ନୁହେଁ । ଜରାଯୁରୁ ଜରାଯୁକୁ ଆମର ଅନିବାର୍ଯ୍ୟ ଗତି ଏବଂ ପରିଶେଷରେ ଏକାକାର ଅଭିନ୍ନ ଅନ୍ଧାର ହିଁ ଏକମାତ୍ର ସତ୍ୟ ।



# ମଥୁରା ନଗରୀ

କେବଳ କେଶବ କାହିଁକି, ମଥୁରାକୁ ଯେ କେହି ଗଲେ ମଧ୍ୟ ଆଉ ବାହୁଡ଼ି ଆସେ ନାହିଁ । ଉକୁରୁଣାରଥ ପରି, ଅକ୍ରୂର ରଥ ମଧ୍ୟ ଉବୁକେଳେ ଅଣ-ଲେଉଟା । କାଳସ୍ରୋତରେ ଗୋପ ଏବଂ ମଥୁରା ଦୁଇଟି ଘାଟ । ତଳ ଘାଟକୁ ଯାହା ବୋହିଯାଏ ତା' ଆଉ ପ୍ରତିଲୋମରେ ଫେରିପାରେ ନାହିଁ । କାଳର ବ୍ୟବଧାନ ଦୁର୍ଲଙ୍ଘ୍ୟ । ସେପାରି ଆକାଶରେ ନୂଆ ମେଘ ଉଠିଆସିଲେ ଏପାରିର ଅନେକ ତୃଷ୍ଣ ଚାତକ କଳରବ କରିଉଠନ୍ତି । କିନ୍ତୁ ବର୍ଷା ସେ ପାରିରେ ହିଁ ଝରିଯାଏ । ବିଷର୍ଣ୍ଣ ପକ୍ଷୀକୁଳ ନୀରବରେ ଝାଉଁଳିପଡ଼ନ୍ତି । ମେଘ ଘୁଞ୍ଚିଯାଏ ଦୂରରୁ ଦୂରାନ୍ତର ; ମଥୁରା ନଗରୀରୁ କାହିଁ କେଉଁ ଦ୍ୱାରକା କଟକ ! ଗୋପର ଗୋଧୂଳି-ସମାଚ୍ଛନ୍ନ ଆକାଶରେ ନିରଭ୍ର ରାତ୍ରିର ଯବନିକା ଘୋଟେଇ ହୋଇଯାଏ । ଶତାବ୍ଦୀ ଶତାବ୍ଦୀ ଧରି ପ୍ରତ୍ୟେକ ଶୀତାର୍ତ୍ତ ହେମନ୍ତ-ରେ ଯମୁନା ଉପରେ ଜମିଯାଏ ଭିଜା ଭିଜା ଦୀର୍ଘଶ୍ୱାସର ଅଜସ୍ର କୁହୁଡ଼ି । ଅତି ନୀରବରେ, ଅତି ସନ୍ତର୍ପଣରେ ପୁଣି ଫୁଟିଯାଏ ସେ ଯବନିକାର ପଶ୍ଚାତକୁ । ଦ୍ୱାପରଯୁଗୀୟ ଏ ଲାଜକୁଳି ଦୀର୍ଘଶ୍ୱାସ ଗୁଡ଼ିକୁ କେହି ଚିହ୍ନିପାରନ୍ତି ନାହିଁ । ଏ ରାଜ୍ୟରେ ଏବେ କୌଣସି ଆଷାଢ଼ରେ କଦମ୍ବ କଣ୍ଟକିତ ହୁଏ ନାହିଁ । ମଳୟ ଏବଂ ଚନ୍ଦ୍ରିକାର ଆବାହନରେ କୌଣସି କୁଞ୍ଜଧୂଳି ଅସ୍ଥିର ହୁଏ ନାହିଁ । କଂସ-କଟକ ମଥୁରାର ଭାବ-ଶ୍ମଶାନ ଆକୁମାରୀ-ହିମାଳୟ ବିକୀର୍ଣ୍ଣ ହୋଇ ପଡ଼ିଛି । ସେଥିରେ ଆମେ ବା କିପରି ବୁଝିବା ସେ ଗୋପ ଏବଂ ଏ ମଥୁରାର ଦୁରନ୍ତ ବ୍ୟବଧାନ କେତେ !

ମଥୁରା ଅନ୍ଧକାର କାରାକକ୍ଷ । ତାର ସ୍ତୁପ ସ୍ତୁପ ପାଷାଣ ପାଚେରୀ ନୀରବରେ ତାର ରାତିରେ ଘୁମଉଥାନ୍ତି । ସମସ୍ତ ଦ୍ୱାପରଯୁଗର ଘନୀଭୂତ ତମିସ୍ରା ଯମୁନା କୂଳରେ କୁଣ୍ଡେଇ ହୋଇ ରହିଥାଏ । ତାର ରାଜନବର, କୋଠା ବାଡ଼ି, ପ୍ରଶସ୍ତ ରାଜଦାଣ୍ଡ ସବୁଗୁଡ଼ିକ ଅଚିହ୍ନା, ଅପରିଚିତ ପରି ଅନାନ୍ତି । କୌଣସିଠାରେ ମମତାର ସ୍ପନ୍ଦନ ନାହିଁ ଆପଣାପଣର ଉଷ୍ମତା ନାହିଁ । ସବୁ ଶୀତଳ, ହିମ-ଜର୍ଜର, ନିର୍ମମ ; —ଲୁହାର ଶିକୁଳି ପରି, ପଥରର କାନ୍ଥ ପରି, ନୀରବ ଅନ୍ଧକାର ପରି । ସେଇଠି ପ୍ରହରୀର କବାଟ, ତା'ର ଅସ୍ତ୍ରର ଝଣତ୍କାରହିଁ ଏକମାତ୍ର ଶବ୍ଦ । ଅନ୍ଧାର ଭିତରେ ଆହୁରି ଅନ୍ଧାରୁଆ ଛାଇଗୁଡ଼ିଏ ଆସିବା ଏବଂ ପୁଣି ବାହାରିଯିବା ଏକମାତ୍ର ଦୃଶ୍ୟ । ସେଇଠି ପଥର ଦେହରେ

ଶିଶୁର ରକ୍ତପରି ଭୟ, ଦ୍ୱେଷ ଲେପି ହୋଇ ରହିଥାଏ । କଂସର ଅଟ୍ଟହାସ ବା ତାର ପରାକ୍ରମ ମଧ୍ୟ ତାକୁ ଲିଭେଇପାରେ ନାହିଁ । ସେ କାରାକକ୍ଷରେ ମାନବ ଜାତିର ମାତୃତ୍ୱକୁ ବନ୍ଦିନୀ କରି ରଖାଯାଏ । ନୂଆ ଦେଖିଲେ ତାକୁ ଶିଳା ଦେହରେ ଛେଚି ବିନାଶ କରାଯାଏ । ପୁରୁଣାର ଭୟ- ହିଂସ୍ର ରୂପରେ ସେ କାରାକକ୍ଷରେ କୁଣ୍ଡଳି ବାନ୍ଧି ବସିଥାଏ; ନୂଆକୁ ଦେଖିବା ମାତ୍ରେ ପ୍ରହାର କରିବ । ନିରୁଦ୍ଧ କାରାକକ୍ଷ ଭିତରେ ପବନ ନିଶ୍ଚଳ, ସୂର୍ଯ୍ୟ ଅଗ୍ନି ନିର୍ବାପିତ, ନୀରବ କଷଣ ହିଁ ଏକମାତ୍ର ସତ୍ୟ ।

ରାଜଧାନୀର ଖବର ଆସି ଗୋପରେ ପହଞ୍ଚେ । ଗଉଡ଼େ ଅଧମ ହେଲେ ମଧ୍ୟ ସବୁ ବୁଝନ୍ତି । ସୁଦାମ ସୁବଳ ମିଶି କଥା ହେଉଥିବେଳେ ଶୁଣେ, "ମଥୁରାରେ ମଣିଷ ନାହାନ୍ତି । ସବୁଗୁଡ଼ାକ ଅସୁର । ସବୁ ରାଜଧାନୀରେ ସବୁବେଳେ ଅସୁର ହିଁ ରହନ୍ତି । ରାମ ରାଜା ହେଲେ କଥା ନିଆରା । ନଚେତ୍ ସବୁ ରାଜଧାନୀ ଉଣାଅଧିକେ ମଥୁରାନଗରୀ । ସେଇଠି ମାଇକିନିଆ-ଗୁଡ଼ାକ ଅସୁରୁଣୀ; ତାଙ୍କ ଦେହସାକ ବିଷ, ରୋମେ ରୋମେ ବିଷ । ଆମେ ପଠାଉଥିବା ଭାର ଭାର କ୍ଷୀର ପିଇ କଂସ କେଶୀ ନିଶ ମୋଡ଼ୁଥାନ୍ତି, ମୁଷ୍ଟିକ ଚାଣୁର ବାହୁ ପିଟୁଥାନ୍ତି । କଅଁଳିଆ ପିଲା ଦେଖିଲେ ତା'ବେକ ମୋଡ଼ିଦେବା-ପାଇଁ ଖୋଜ ଧରି ବସିଥାନ୍ତି । ସେ ରାଜ୍ୟରେ ଶଗଡ଼ଗୁଡ଼ାକ ମଧ୍ୟ ଅସୁର-ମାଡ଼ିଗଲେ ମାରିଦେବେ । ଷଣ୍ଢଗୁଡ଼ାକ ଅସୁର । ବକ ମଧ୍ୟ ପାଟି ମେଲେଇ ମଣିଷକୁ ଗିଳିପକାଏ । ମଥୁରା ଏକ ମାନବେତର ରାଜ୍ୟ । ତାର ଚେତନା ଆସୁରୀ । ସେଠିକା ବାଫିବା ରାଜାର ଆଦେଶରେ ଗୋପପୁରଗୁଡ଼ିକୁ ଗସ୍ତରେ ଯାଆନ୍ତି । ସେଇଠି ଶିଶୁହତ୍ୟା ନାମକ ଅଭିନବ ଯୋଜନା କାର୍ଯ୍ୟକାରୀ ହୁଏ।"

ଧୋରୀ ଗୋରୀ ଗୋପାଳୁଣୀଗୁଡ଼ିକ ଗୋଠବାହୁଡ଼ାକୁ ଅନେଇ ଠିଆ ହୋଇଥିଲା-ବେଳେ ମଥୁରାର ନାଗରୀମାନଙ୍କ କଥା ପଡ଼େ । 'ସେମାନେ ସମସ୍ତେ କାମରୂପା ସେମାନେ ମୋହିନୀବିଦ୍ୟା ଜାଣନ୍ତି । କିମିଆଁ ଗୁଣିଗାରେଡ଼ିରେ ପୁରୁଷଙ୍କୁ ବଶୀଭୂତ କରିଦିଅନ୍ତି । ସେମାନେ ଟଭାଫଳ ପରି ଖୋସା ପକେଇ ଜାଣନ୍ତି । କଣେଇ ଚାହିଁ ଜାଣନ୍ତି । ଦର୍ପଣ ଆଗରେ ଦିନଯାକ ବସି ସଜେଇ ହୋଇଗଲେ ସେମାନଙ୍କର ସବୁ କୁଞ୍ଚ ଲୁଚିଯାଏ । ସେମାନେ ଭୂରୁ ଚାଳିଦେଇ ହସିଦେଲେ ମନ ମୋହିନିଅନ୍ତି । ସେମାନେ ଗନ୍ଧର୍ବୀ ପରି ନାଚନ୍ତି; ଗୀତ ଗାଆନ୍ତି; ଯନ୍ତ୍ର ବଜାନ୍ତି । ଲୋଭିଲା ସର୍ପିଣୀ ପରି ସେମାନେ ଅନେଇଥାନ୍ତି ଦାଣ୍ଡରେ ସୁକୁମାର କିଶୋରଟିଏ ଦେଖିଲେ ଚୋବିଦେବେ । ସେମାନେ ସମସ୍ତେ ଡାହାଣୀ ।

ତାଂକର ସର୍ବନାଶ ହେଉ । ତାଂକ ଫୁଦରପଣରେ ନିଆଁ ଲାଗିଯାଉ । ସେସବୁଙ୍କ ସମସ୍ତେ ପୁତନା । ତାଂକ ଦେହଯାକ ବିଷ; ରୋମେ ରୋମେ ବିଷ ।"

ଏଣୁ ସେ ରାଜ୍ୟରେ ସର ଲବଣୀ ଗୋଟିକା କାହୁଁ ବା ମିଳଂତା ! ସେଠାକୁ ଗଲେ କିଂବା ଜୀବନର ପ୍ରବଳ ସଂଘର୍ଷରେ ପ୍ରବେଶ କଲେ ଅଭିଅଳ ପୁଅ କଣ ଖାଇବ ବୋଲି ପ୍ରତ୍ୟେକ ଯଶୋଦା ଚିଂତାକୁଳ ହୋଇଉଠଂତି । ନିଜର ଶୂନ୍ୟ କୋଳକୁ ଆଉଁସିଦେଇ ଜୀବନର ବ୍ୟର୍ଥତାରେ ହାହାକାର କରିଉଠଂତି । ରାଜାଦେଶ ପାଇ ଏବେ ମଧ୍ୟ ପୁଅ ଯୁଦ୍ଧଭୂମିକୁ ଗଲାବେଳେ ଯଶୋଦା ବିଳପି ଉଠଂତି । ପାଠ ପଢ଼ିବାକୁ ବିଲାତ ଗଲାବେଳେ ମଧ୍ୟ ବିଳପି ଉଠଂତି । କାରଣ ମା'କୋଳ ଛାଡ଼ିଲେ ପୁଅ ମଥୁରାକୁ ହିଁ ଯାଏ ଏବଂ ସେଠାରୁ ବାହୁଡ଼ି ଆସି-ପାରେ ନାହିଁ । ଏକମୁହାଁ ସ୍ରୋତରେ ପଛକୁ ବାହୁଡ଼ିବା ସଂଭବ ନୁହେଁ । ଏଣୁ କିଆରୀରୁ ଧାନ କାଟି ଆଣିଲା ପରେ, ତେଂଫରୁ ଫୁଲ ତୋଳି ଆଣିଲା ପରେ, ସେଠାରେ ଯଶୋଦାର ସ୍ମୃତି-ମୁଖର ବିବଶ ବିଳାପ୍ ଗୁମୁରୁଥାଏ ।

ମଥୁରା ଏକ ଅପରିଚିତ ଅନାଗତର ରାଜ୍ୟ; ଗୋଟାଏ ଅଂଧାରୁଆ ଗିରିଗହ୍ୱର ପ୍ରବେଶଦ୍ୱାର, ଯାହା ଭିତରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସମସ୍ତେ ଟାଣି ହୋଇ ଯିବାକୁ ବାଧ୍ୟ । ସେ ଭିତରକୁ କିଂତୁ ଯଶୋଦାଂକର ପ୍ରବେଶ ନିଷେଧ । ସେ କେବଳ ନିଜର ଉଦ୍‌ବେଗ ସଂଭାଳିନପାରି କେତେବେଳେ କହିପକାଂତି- 'ମଥୁରାକୁ ଯାଇ ମଦନମୋହନକୁ କାଖରେ ବସାଇ ନେଇ ଆସିବେ ।' ଏତେ ଯୁଗର ଅଭିଜ୍ଞତା ପରେ ମଧ୍ୟ ଯଶୋଦା ଏହା କହିଚାଲିଥାଂତି ଏବଂ ଅମାନିଆ ବିଳାପ କରି ଚାଲିଥାଂତି । ଅକ୍ରୁର ରଥ କିଂତୁ ଫେରେ ନାହିଁ ଗଲା ପଥ ବାହୁଡ଼େ ନାହିଁ; ବାହୁଡ଼ି ପାରେ ନାହିଁ । ସେ ମଧ୍ୟ ମଥୁରାକୁ ଯାଇ ମଦନମୋହନକୁ ଆଣିପାରଂତି ନାହିଁ । ଏଣୁ ବାତ୍ସଲ୍ୟ-ମମତାସ୍ନିଗ୍ଧ ଯଶୋଦାମାନଂକ ପାଇଁ ମଥୁରା ଏକ ଶିଶୁହଂତା ନିର୍ମମ ରୁକ୍ଷତା, ଗୋଟାଏ କ୍ଷୁଧାର୍ତ୍ତ ବଂଟାବଣ, ଯାହା ଭିତରେ ଥରେ ବାଛୁରୀ ପଶିଗଲେ ଆଉ ବାହୁଡ଼ିପାରିବ ନାହିଁ । ତାର ନାନାବିଧ କଳ୍ପିତ ବିପର୍ଯ୍ୟୟ ଯଶୋଦାଂକୁ ଆତଂକିତ କରେ, ଆଉ ବିହ୍ୱଳ କରେ । ଏଣୁ ତାଂକର ଲହୁଣୀଖିଆ ପୁଅକୁ ଶେଷଥର ପାଇଁ ଆଶ୍ଳିଷ୍ଟ କରି ସେମାନେ କହିଥାଂତି, 'ଘନଶ୍ୟାମ ରେ, ମଥୁରାନଗରୀ ତୁ ନ ଯା'! ଯଶୋଦାଂକର ଏ ଯୁଗାବଧିବ୍ୟାପୀ ବିଳାପକୁ ଏଡ଼ିଦେଇ, ପ୍ରତି ମୁହୂର୍ତ୍ତରେ କିଂତୁ ପୁତ୍ରମାନେ ମଥୁରାନଗରୀକୁ ଯାଆଂତି । ଅନିବାର୍ଯ୍ୟ ଭାବରେ ବାସ୍ନା ଉଡ଼ିଯାଏ । ଯଶୋଦାଂକର କୋମଳ ପାଖୁଡ଼ାଗୁଡ଼ିକ ମଉଳିଯାଏ । ବ୍ୟର୍ଥତାର ଗୁରୁ ଭାରରେ, ବିରହଯାତନାର ନିଦାରୁଣ ଉଷ୍ମାଗ୍ନିରେ ଗୋଟି ଗୋଟି ହୋଇ ଝଡ଼ିଯାଏ ।

ଏହିଭଳି କିନ୍ତୁ ଯେ ମଥୁରାକୁ ଯାଏ, ସେ ଅତର୍କିତ ଭାବରେ ହିଁ ଯାଏ ଏବଂ ଗୋବର୍ଦ୍ଧନ ଚଳୁ ଆଂଗୁଠି କାଢ଼ିନେଇ ଚାଲିଯାଏ । ସମସ୍ତଙ୍କୁ ନିଜ ଉପରକୁ ଆଉଜେଇ ନେଲା ପରେ, ସମସ୍ତଙ୍କର ମନପ୍ରାଣକୁ ବଶୀଭୂତ କଲା ପରେ, ସେ ହଠାତ୍ ଓହରିଯାଏ । ଆଶ୍ରିତମାନଙ୍କ ଉପରେ ମଡ଼େଇ ହୋଇପଡ଼େ ଅକଳନୀୟ ପଥରର ବୋଝ । ପାନ୍ଥଶାଳାର ସହଯାତ୍ରୀ ସାମାନ୍ୟ ପରିଚୟ ପରେ ଯଦି ପାଖେଇ ଆସେ ତା'ହେଲେ ତା'ର ବିଦାୟ ମୁହୂର୍ତ୍ତ ବ୍ୟଥାବିଧୁର ହୋଇଉଠେ । ଅପସରିଯାଉଥିବା ସେ ଯାତ୍ରୀଟି ପଛରେ କିଛି ଦୂର ଗୋଡ଼େଇଯାଇ ପବନରେ ମିଳେଇଯାଏ ଗୋଟିଏ କମ୍ପିତ ଦୀର୍ଘଶ୍ୱାସ । କିନ୍ତୁ ଯାହାପାଇଁ ଆଜୀବନ ସ୍ୱପ୍ନର ସାଧନା କରାଯାଇଛି ; ଯାହାକୁ ପ୍ରତି ମୁହୂର୍ତ୍ତରେ ଦେହ, ମନ ପ୍ରାଣର ଆହୁତି ଦେଇ ସଂଦୀପିତ କରାଯାଏ, ଯାହାକୁ ଜୀବନର ଏକମାତ୍ର ମୂଲ୍ୟ, ଏକମାତ୍ର ସଫଳତା, ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ନିବାସ, ଶରଣ ଏବଂ ସୁହୃତ୍ ବୋଲି ଚୂଡ଼ାନ୍ତ ରୂପେ ଗ୍ରହଣ କରିନିଆଯାଇଛି, ସେ ଯଦି ଚାଲିଯାଏ ତେବେ ଆନାଶ୍ରିତ ଲଇ ପରି ଜୀବନ ଅବଶ୍ୟ ଲୋଟି ପଡ଼ିବ । ଘନ କୁହୁଡ଼ି ପରି ଯମୁନା ବକ୍ଷରେ ଜମିଯିବ ସେ ଅନନ୍ତ ଦୀର୍ଘଶ୍ୱାସ । ସେଇ ଚୂଡ଼ାନ୍ତ ବିଚ୍ଛେଦର ମୁହୂର୍ତ୍ତରେ ଆତ୍ମା ବିଳପି ଉଠେ—'ସରି ଯାଉଛି ରେ, ଏହିଠାରୁ ମନୋରଥ ।' ତଥାପି ଜୀବନର ଶେଷ ତନ୍ତୁ ଛିଡିଯାଏ ନାହିଁ । ଏ ବାଡ଼ବାଗ୍ନିକୁ ମଧ୍ୟ ଧାରଣ କରିବାକୁ ସେ ନୀରବରେ ପ୍ରସାରିତ ହୋଇଯାଏ । ଜଳିଯାଏ ଦିଗବଳୟ ଏବଂ ଆକାଶ । ଜୀବନର ଭିତ୍ତିଭୂମି ପାଉଁଶ ହୋଇଯାଏ । ସମସ୍ତ ସଂଚିତ ଅର୍ଥ ବିନିମୟରେ ପାଇଥିବା ମୁକ୍ତାହାର ବୁଡିଯାଏ ଗୋଟିଏ ଲୋତକ ସମୁଦ୍ରରେ । ଇସ୍ ! ମଥୁରା କେଡ଼େ ଭୟଙ୍କର ସତେ ! ତଥାପି ମଣିଷ ବଂଚେ । ସିଏ ଚାଲିଯାଏ ତା'ର ମଥୁରା ଏବଂ ଦ୍ୱାରକାକୁ । ହିଏ ଚାଲିଯାଏ ହସ୍ତିନା । କାଳର ସଂଘାତରେ ରେଣୁ ରେଣୁ ହୋଇ ଝରିଯାଏ ନିଷ୍ଫଳ ଜୀବନ । ତଥାପି ଗୋପୀ ବଂଚନ୍ତି ; ନନ୍ଦ ଯଶୋଦା ବଂଚନ୍ତି ; ଆମେ ବଂଚୁ !

କଳସ ଝଡ଼ିପଡ଼ିଥିବା କୋଣାର୍କ ପରି ବଂଚିବା ଏକ ବିଡ଼ମ୍ବନା, କିନ୍ତୁ ସ୍ମୃତିଭିତ୍ତିକ ସେଇ ପାଷାଣ ପରି ଏହା ମଧ୍ୟ ସତ୍ୟ । ଆକାଶ ଗର୍ଭରେ ଭାସମାନ ବକ-ଦମ୍ପତି ପରି ଜୀବନର ମୂଲ୍ୟ ଆସନ୍ତି ଏବଂ ଏହିପରି ଯାଆନ୍ତି । ଭାଦ୍ରବର ଘୋର ବର୍ଷା ରାତିରେ ଯମୁନା ପାରି ହୋଇ ଆସନ୍ତି ଏବଂ ଏହିପରି ଯାଆନ୍ତି । ଆମପାଇଁ ସେମାନଙ୍କର ଆବିର୍ଭାବ ଯେପରି ଅଯାଚିତ, ତିରୋଭାବ ସେପରି ଅଣାୟତ୍ତ । ଯେ ଆସେ ସେ ଯିବାପାଇଁ ହିଁ ଆସେ । ଆସିବା ଯିବା ମଝିରେ ସ୍ୱର୍ଣ୍ଣାଭ କେତୋଟି ମମତାର ବିନ୍ଦୁ ମାତ୍ର ଝଳ ଝଳ ହେଉଥାଏ । ସେଗୁଡ଼ିକୁ ଘେରି ଅଜସ୍ର ଲୋତକର ମୁକ୍ତାବିନ୍ଦୁ । ଉଦ୍‌ଭିଦପରି ଯେଉଁମାନେ

ନୂତନ ପ୍ରୟାସରେ ବାର୍ଷିକ ଫସଲ ପାଇଁ ପ୍ରସ୍ତୁତ ରହିଥାଂତି, ଥରେ ରିକ୍ତ ହେଲେ ଯେଉଁମାନଙ୍କର ସଂଭାବନା ସରିଯାଏ ନାହିଁ, ସେମାନଙ୍କ କଥା ନିଆରା । ଯେଉଁମାନେ କିଂତୁ ଜୀବନର ସକଳ ନିର୍ଯାସକୁ ପ୍ରତି ମୁହୂର୍ତ୍ତର ସଂଚୟରେ ଏକାଠି କରି ଗୋଟିଏ ମାତ୍ର ମୁକ୍ତାଫଳ ପାଇଥାଂତି, ସେ ଫଳଟି ଝଡ଼ିଗଲେ ଅବଶିଷ୍ଟ ନିଃଶେଷ ଖୋଳପାରେ କେତୋଟି ଦୀର୍ଘଶ୍ୱାସ ଛଡ଼ା ଆଉ କିଛି ରହିଯାଏ ନାହିଁ । ବଂଚିବାର ସାର୍ଥକତା ନ ଥିଲେ କେବଳ ଶ୍ୱାସକ୍ରିୟାର ସଂଚାର ପାଇଁ ବଂଚି ଲାଭ କଣ? ତଥାପି, କାହିଁକି କେଜାଣି ଜୀବନର ସେ ରିକ୍ତ ପରିଚ୍ଛେଦଟି ଅନିବାର୍ଯ ଉପସଂହାର ହୋଇ ଠିଆହୁଏ । କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ପରିଶେଷରେ ଯଶୋଦାର ବିଳାପ ଆଉ ଶୁଭେନାହିଁ । ମହୁମାଛିମାନଙ୍କ ମହୁଁଢେ ନିଆଁ ଜାଳିଦେଇ ମଥୁରା ମଧୁ ଲୁଂଠନ କରେ । ଶାମୁକାମାନଙ୍କୁ ଦଉଫାଳ କରି ମୁକ୍ତା ସଂଗ୍ରହ କରେ । ମିଶର ସାମ୍ରାଜ୍ୟ ଭାଜିପଡ଼େ କୁଚ କୁଚ୍ଛ ବାଲିର ପାହାଡ଼ ପରି । ସମସ୍ତ ଅତୀତ ହୋଇଯାଏ ଗୋଟାଏ ପ୍ରକାଂଡ ତିନସରର କଂକାଳ । ତା'ଭିତରେ ସ୍ମୃତିର ଆବେଗରେ ମଥିତ ହେଉଥାଏ ବିଡ଼ଂବିତ ଗୋପପୁରର ଦୀର୍ଘଶ୍ୱାସ ।

ମଥୁରା ଅପରିମେୟ ଭବିଷ୍ୟତ୍‌ର ପ୍ରଥମ ମୁହୂର୍ତ୍ତ ଏବଂ ଗୋପ ଅତୀତର ଶୀର୍ଷ–ବିଂଦୁ । କାଳର ଅବାରିତ ଧାରା ଗୋପରୁ ମଥୁରାକୁ ଚିର–ପ୍ରବହମାନ । ମଥୁରା ଶୋଷଣ କରେ । ଗୋପର ଦୁଧ ଦହି ଲହୁଣୀ ସହିତ ଗୋପର ଆତ୍ମାକୁ ମଧ୍ୟ ଶୋଷଣ କରିନିଏ । ସେଥିରେ କଂସର କ୍ରୂରତା ଅଛି । ରାଜାର ଦୁର୍ଲଂଘ୍ୟ ଆଦେଶ ଅଛି । ମାମୁଁପଣିଆର ପ୍ରଲେପ ମଧ୍ୟ ଅଛି । ଗୋପ ମଥୁରାରେ ହିଁ ଅଜାଡ଼ି ହୋଇଯାଏ; ଉତ୍ସର୍ଗିତ ହୋଇଯାଏ ; ତାହା ଅବଶ୍ୟଂଭାବୀ । କିଂତୁ ଗୋପର ଆତ୍ମାକୁ ଧାରଣ କରି ମଥୁରା ଶିହରିତ ହୁଏ । ତା'ର ପଥରର ପାଚେରୀ ଦୋଳାୟିତ ହୁଅଂତି । ମଥୁରାର ବଧୂକୁଳ ଗୋପର ସ୍ନିଗ୍ଧତାରେ ବିଗଳିତ ହୁଅଂତି । କାରାକକ୍ଷର ଅପୂର୍ଣ୍ଣ–ଅଂଧାର ଉଭେଇଯାଏ । ଅସୁର ଚେତନା ପରାଭୂତ ହୁଏ । ରୂପାଂତରିତ ହୁଏ ମଥୁରା । ଚଂଦନ କର୍ପୂରରେ ସୁରଭିତ, ବେଣୁଧ୍ୱନିରେ ମୂର୍ଚ୍ଛିତ ମଥୁରାର ଆଉ ସତଂତ୍ରତା ନାହିଁ ; ସେ ଗୋପାୟିତ ହୋଇଯାଏ । ମଥୁରାକୁ ଗୋପାୟିତ କରି ଗୋପର ଆତ୍ମା ପୁଣି ସଂଚରିଯାଏ ଆଉ ଏକ ମଥୁରାକୁ ଏବଂ ସେହିପରି ଆଉ ବାହୁଡ଼େ ନାହିଁ । ଗୋପହିଁ ମଥୁରାର ଚତୁଃାଂତ ପରିଣତି; ଯେଉଁଠି ତାର ପାଷାଣ ରୁକ୍ଷତା ଦ୍ରବୀଭୂତ ହୁଏ, ତାର ହିଂସ୍ର ବିଦ୍ୱେଷ ପ୍ରେମ–ଜର୍ଜର ହୁଏ । ସତ୍ରୁପରି ଏ ଗୋପଗଣ୍ଡିକୁ ବିଛ କଲା ପରେ ସେ ଅହରହ ମଥୁରାକୁ ପ୍ରସ୍ଥାନ କରୁଥାଏ । ଗୋପ ଏବଂ ମଥୁରା ଦୁଇଟି ଘାଟ ମାତ୍ର—କିଂତୁ ସେ ଧାରା ଗୋପର ନୁହେଁ କି ମଥୁରାର ବି ନୁହେଁ ।

# ମଧୁ ସନ୍ଧାନ

ଘୋଷଣା ହେଲା ଯେ ଦୁଃଖ ସତ୍ୟମ୍ ! ହେଲା, କେହି ତ ମନା କରୁନାହିଁ! ତା' ପାଇଁ ପ୍ରମାଣ ମଧ୍ୟ ଦାବୀ କରୁନାହିଁ । କିନ୍ତୁ ସତ୍ୟ କ'ଣ କେବଳ ଦୁଃଖ? ସଂସାର କ'ଣ ଗୋଟିଏ ମାତ୍ର ବିଶୁଦ୍ଧ ଉପାଦାନକୁ ନେଇ ଚଳିପାରେ? ଏଠି ବିଶୁଦ୍ଧ କିଛି ନାହିଁ । ଦୁଃଖ ବି ନୁହେଁ । ଏଠି ବରଂ ଅପରିମେୟ ଦୁଃଖର ବୋଝକୁ ଓହ୍ଲେଇ ରଖିବା ପାଇଁ ଗୋଟିଏ ଡେଂସର ପ୍ରୟୋଜନ ହୁଏ ଏବଂ ତାହାରି ସନ୍ଧାନରେ ବିତିଯାଏ ଜୀବନ । ସ୍ୱପ୍ନଭଳି, ସ୍ମୃତିଭଳି ସେ ମେଦୁର ଆକାଶରେ ଚମକି ଉଭେଇଯାଏ । ତାକୁ ଆମେ ଖୋଜୁଥାଉ ଦେଶ ଦେଶାନ୍ତର, ନଦୀ, ଗିରି, ବନ ଏବଂ ଉପତ୍ୟକାରେ ; ମଣିଷର ଆଖିରେ, ମୁହଁରେ, ଭିତରେ ଏବଂ ବାହାରେ । ସେ ମିଳେ କି ମିଳେନା କହିବା ଦୁଷ୍କର; କିନ୍ତୁ ସେ ଯେ ଆସେ ଏବଂ ଯାଏ ସେତିକିରେ ବରଫକୁ ବାଷ୍ପ କରିଦିଏ, ସମୁଦ୍ରରେ ଢେଉ ଫୁଙ୍କିଦିଏ, ପୃଥିବୀଟିକୁ ବୁଲେଇ ଦିଏ ତା'ର ଅକ୍ଷଦଣ୍ଡରେ—ଏଥିରେ ସନ୍ଦେହ ନାହିଁ । ତା'ରି ସ୍ପର୍ଶରେ, ସେଇ ଆଭାସରେ ଜୀବନ ଚଞ୍ଚଳ ହୋଇ-ଉଠେ । ହୁଏତ ଆହୁରି ଯାତନା-ଯୋଗ୍ୟ ହୋଇଉଠେ ।

ଧରାଯାଉ କେହି ଜଣେ ହାରିଯାଇଛି । ତା' ଆକାଶରୁ ପବନ ସରିଆସୁଛି । ସେ ନଇଁଆସୁଛି ; ଦୁର୍ବହ ବୋଝ ତଳେ ଶୋଇଯିବ, ପେଷି ହୋଇଯିବ । ଏତିକିବେଳେ ଅକସ୍ମାତ୍ ତାକୁ ଚାହିଁ ଜଣେ ଝିଲ୍‌ଝିଲ୍ ହସି ଦେଇଛି । ସେତିକି-ରେ ସେ ତେଜିଉଠିଛି । ଏଇ ସେ ହସଟିକୁ ଧରିବାକୁ ହାତ ବଢ଼େଇଦେଇଛି । ହସ ଘୁଞ୍ଚିଯାଇଛି ଗହ୍ୱରରୁ ଗହ୍ୱରକୁ । ଓଟାରି ହୋଇ କିଛି ବାଟ ବଢ଼ିଗଲା ପରେ ହୁଏତ ଆଖିରେ ନିଆଁ ଝୁଲି ଫୁଟେଇ ଆକାଶକୁ ଚାହିଁ ସେ ଚିତ୍କାର କରିଛି—"ମୋତେ ଅଗ୍ନି ଦେ, ଆଲୋକ ଦେ, ଅମୃତ ଦେ, ଭରିଦେ ମୋର ବିବର ! ଏଇ ଗହ୍ୱରରୁ ମୋର ଅଭିଯାନ ଆରମ୍ଭ ହେଲା ।" —ନିଟୋଳ ସୁଧାବିନ୍ଦୁ ପରି ଗୋଟିଏ ଜହ୍ନ ରାହୁର ମୁହଁରେ ପଶି ବାହାରିଯାଏ । ତାକୁ ଚୋବେଇବାକୁ ତା'ର ଦାନ୍ତ ନାହିଁ । ଜୀର୍ଣ୍ଣ କରିବାକୁ ଉଦର ନାହିଁ । ଥରେ ଗିଳିଦେଲେ ପୁଣି ଗିଳିବାକୁ ସେ ତା' ପଛରେ ଗୋଡ଼େଇଥାଏ । ତାକୁ ସେ ଆକାଶ ସାରା ଜୀବନ ସାରା ଖୋଜୁଥାଏ--ପାଏ କି ପାଏନା କହିବା ଦୁଷ୍କର ।

ହୁଏତ ଏକପ୍ରକାର ସାଏ । ସାଉ ନ ଥିଲେ ବଂଚିବାର ଏଉଳି ଉତ୍କଟ ଆସ୍ପୃହା କାହିଁ? ସଂଘର୍ଷ କରିବାର ପ୍ରବୃତ୍ତି ବା ଆସ୍ପୃହା କାହିଁ? ବର୍ଷ ଥରେ ନଇଁଗଲେ ଆଉଥରେ ମୁଣ୍ଡ ଟେକି ଚାହିଁବାର ଇଚ୍ଛା ସମ୍ଭବ ହୁଅନ୍ତାନାହିଁ । କିଂତୁ ସରିବାର ଜଂଜାଳରେ ହାଲିଆ ହୋଇ ବସିପଡ଼ିଲାବେଳେ ସାନପୁଅ ବେକରେ ଓହଳି ଟିକିଏ ନାଚିଦିଏ । ଝିଅ ମୁଣ୍ଡ ଉପରୁ କୁଟାଟିଏ କାଢ଼ି ଦେଇ ଆଉଁସି ଦିଏ । ପତ୍ନୀ ଟିକିଏ ହସିଦିଅନ୍ତି । ବାଆସ୍, ଏତିକିରେ ଘା'ରେ ବକଳା ବାନ୍ଧିଯାଏ । ପୁଣି ଥରେ ଶିହରି ବଳ ଚଢ଼ିଆସେ ଆଂଠୁଗଣ୍ଠି ଉପରକୁ ଏବଂ ପୁଣି ଯୁଦ୍ଧ କରି ରକ୍ତାକ୍ତ ହେବାରେ ଏଣିକି ଆଉ ଆପତ୍ତି ନଥାଏ । ସତେ 'ବାହାବା' ଶୁଣିବେଳେ ଦଉଡ଼ୁ ଦଉଡ଼ୁ ବୋଝ ଉଠେଇବା ପାଇଁ ମନହୁଏ--ଟିକିଏ ଯଶ ଟିକିଏ ସମ୍ମାନ ପାଇଁ । ସେଇଭଳି ଟିକିଏ ସ୍ନେହ, ମମତା, ରତି, ପ୍ରୀତି ପାଇଁ, ସୁଖ-ସ୍ୱାଚ୍ଛନ୍ଦ୍ୟ ପାଇଁ ଜୀବନର ଦୈନନ୍ଦିନ ଭାର ବହନ କରିବାକୁ ସାମର୍ଥ୍ୟ ଆସିଯାଏ । ଏଇମାତ୍ର ପୁରସ୍କାରର ସମ୍ଭାବନା, ଏଇ ଆଶା, ଏଇ ସ୍ୱପ୍ନ ପାଇଁ ସଂଘର୍ଷ ହୋଇ-ଯାଏ ସାର୍ଥକ--ନ ହେଲେ ଶ୍ରମ ଏବଂ ଘର୍ମର ସେଉଳି କିଛି ଅର୍ଥ ନାହିଁ ।

ଯେଉଁ ଟିକକ ମହୁ ଚଟେଇଦେଇ ଛିଂକି ଗିଳିବାକୁ କୁହାଯାଏ ଏବଂ ଯାହାର ଖାତିରରେ ଦିଅଂକ ରାଣ ପକେଇ ଛିଂକିଗିଳା ଚାଲିଛି, ସେଇ ଧୂମ୍ରବସ୍ତୁଟିକୁ ସଂପୂର୍ଣ୍ଣ ଆୟତ୍ତ କରିବାକୁ ଧାଁଧପଡ଼ ଚାଲିଛି କେଉଁ ଆଦିମ କାଳରୁ । ସେ ଯଦି ଉଭେଇ ଯାଆନ୍ତା, ଆଉ ସମସ୍ୟା ନଥିଲା । ଦୁର୍ଗଚୂଡ଼ାର ଗବାକ୍ଷରେ ପଦ୍ମଫୁଲ ପରି ମୁହଁଟିଏ ଆଦୌ ନ ଫୁଟିଲେ ଏ ପଥରକାନ୍ଥଗଡ଼ାକ ପାଇଁ କେହି କ'ଣ ସଂଗ୍ରାମ କରନ୍ତା!ସେ ମୁହଁଟି ପ୍ରଥମେ ଢଂଚରେ ଥାଇ ଚଟେଇଦିଏ କ'ଣ ଗଡ଼ୁଥାଏ ଅମୃତ ବର୍ଷିଦେବ ବୋଲି ଟକମକ ଫୁଟୁଥିବା ରକ୍ତର ସୈନିକ-ମାନଂକୁ ଠାରିଦିଏ । ତା'ପରେ ଚାଲେ ସଂଗ୍ରାମ । ଏ ପଥର ଟାଳିଦେଲେ, ଏ ପାହାଡ଼କୁ କାଖେଇପାରିଲେ, ସେ ପଦ୍ମଫୁଲ ମୁକୁଳିବ । ଏ ଭୂଇଁକୁ ସାତତାଳ ଗହୀର ପର୍ଯ୍ୟନ୍ତ ବିଦାରିଗଲେ ହୀରା ଝଟକିବ । ଏ ସାତଟାଯାକ ସମୁଦ୍ରକୁ ଛେପିଗଲେ ଲଂକା ମହକିବ । ଏଇ ଭଳି ପାଂଚଲକ୍ଷ ମୁଣ୍ଡ ଗଡେଇଲେ ପାଂଚ-ହାତ ମାଟିର ଇଲାକା ମିଳିଯିବ । ସବୁପ୍ରକାର ଯୋଜନା ଏବଂ ସଂଘର୍ଷ ଶେଷକୁ ଏଇଭଳି ଟିକିଏ କ'ଣ ସ୍ୱପ୍ନ ବୋଲି ଦିଆ ହୋଇଥାଏ । ତାହାରି ଆଶାରେ ଜୀବନକୁ ପଣ ଲଗେଇ ଯୁଦ୍ଧ ଜାରିହୁଏ । ଏ ଯୁଦ୍ଧ ହୁଏତ ସରେନା । ଗୋଟିଏ ଭୂମିରେ ଉତ୍ତାପ କମିଆସିବାବେଳକୁ ଆଉ ଏକ ଭୂମିରେ ଆଉ ଟିକିଏ କ'ଣ ଝଲସି ଉଠେ ଏବଂ ସେଇଆଡ଼େ ଓଟାରି ହୋଇଯାଏ ଆଶାଯୁକ୍ତୀ ମଣିଷ ।

ଫାଶରୁ ଫାଶକୁ ବେକ ଗଳେଇ ଘୋଷାରି ହୋଇଯିବା ତ ଜୀବନ । ପ୍ରତ୍ୟେକ ସଂଗ୍ରାମ ଶେଷରେ ପ୍ରତିଶ୍ରୁତ ପୁରସ୍କାରଟି ମିଳେ ନା ନାହିଁ ବୋଲି ପଚାରିବା ପ୍ରୟୋଜନ ନାହିଁ; କାରଣ ସେଇଟା ମିଳେ ଏବଂ ମିଳେନା । ରାତ୍ରିରେ ସମୁଦ୍ର-କୂଳରେ ଦୁର୍ମୂଲ୍ୟ ମାଣିକ୍ୟ ପରି ଝଟକୁଥିବା ପଦାର୍ଥଟି ମଲା ଚିଂଗୁଡ଼ି ଖୋଳଟିଏ । ଦୁର୍ଗ ଉପରୁ ପଦ୍ମଫୁଲ ପରି ମୁକୁଳିଥିବା ରାଜକନ୍ୟାଟି, ବାଂଗୁରୀ ମୋଟୀ ମାଇ-କିନିଆଟିଏ । ହୀରାଗୁଡ଼ିକ ଝକମକି ଗୋଡ଼ି । ...ସ୍ୱପ୍ନରେ ପହଁରୁଥିବା ପର୍ଯ୍ୟନ୍ତ ସେ ସବୁ ମଧୁମୟ ମାଦକ-ସମ୍ପଦ । ପାଖରେ ଆଖି ଫିଟିଗଲେ ନିଷ୍ଠୁର ଢେଳାଏ ଲେଖା ଠୋସ୍ ବସ୍ତୁ ।

ଏ ପ୍ରକାର ବିଡ଼ମ୍ବନା ସତ୍ତ୍ୱେ ଏବଂ ବାରମ୍ବାର ଅପହସିତ ହେବା ସତ୍ତ୍ୱେ ମଧ୍ୟ ସୁନାର ପକ୍ଷୀଟିକୁ ଉଚ୍ଚ ଡାଳରେ ଦେଖି ଆମେ ଜାଲ ଫିଙ୍ଗି ଚାଲିଥାଉ । ଜାଲ ଛନ୍ଦିହୋଇଯାଏ ଡାଳରେ । ପକ୍ଷୀ ଉଡ଼ିଯାଏ ଅନ୍ୟ ଡାଳକୁ । ଏମିତି ବହୁ ଡାଳରେ ସେ ବସୁଥାଏ ଏବଂ ସବୁଠାକୁ ଭିଡ଼ିହୋଇ ଶେଷରେ ଜାଲଟି ଛିଡ଼ିଯାଏ । ଛିଡ଼ା ଜାଲଟିକୁ ନୂଆଣିଆ ଭୂରୁଟଳୁ ଅନାଇଁ ରଫୁ କଲାବେଳେ ସୁନାପକ୍ଷୀ ଉପରୁ ପ୍ରାୟ ଆସ୍ଥା ତୁଟି ଆସିଥାଏ । "ଆଉ୍‌ବେ ଯାଃ! ମୁଁ ଢେର୍ ଦେଖିଛି ସେ ପକ୍ଷୀର ଖେଳ । ସେଇଟା ଖାଲି କୁହୁକ । ଆମକୁ ବେକୁବ୍ ବନେଇବାପାଇଁ ଗୋଟାଏ ଷଡ଼ଯନ୍ତ୍ର ।" ପାଟିଲାଙ୍ଗୁଡ଼ିଆ କ୍ଳାନ୍ତ କିରାତର କଥା କେହି ପ୍ରାୟ ଶୁଣନ୍ତିନାହିଁ । ତାଙ୍କପାଇଁ ତ ସୁନାପକ୍ଷୀ ସହସ୍ର ରୂପରେ ଆକାଶ ପାଣି ପବନରେ ଉଡ଼ି ବୁଲୁଥାନ୍ତି ପଲ ପଲ ହୋଇ । ମହୁରେ ତିଆରି ସୁନାପରି ଜଳଜଳ ଯାଯାବର ପକ୍ଷୀଗୁଡ଼ିଏ ମେଘ ଉପରେ ଧାଡ଼ି ଧାଡ଼ି ହୋଇ ଗତି ହୋଇଯାନ୍ତି । ରୂପସୀର କମଳା ବଗିଚାଯାକ ସୁନାପକ୍ଷୀଙ୍କର ଭିଡ଼— ପୃଥିବୀରେ ଆଉ କିଛି ନାହିଁ ଯେମିତି । ଆଖି ଖୋଲି ଚାହିଁଦେଲେ ଦିଗ୍‌ବଳୟ ସାରା ଝକ୍‌ଝକ୍ କରୁଛି ଡେଣା ମେଲିଥିବା ସୁନାପକ୍ଷୀମାନଙ୍କର ଗହଳିରେ । କୁହୁକ ବିଚ୍ଛେଇ ହୋଇଯାଏ । ଜୀବନସଂଗ୍ରାମ ମଧ୍ୟ ତଦ୍ରୂପ ବିଚ୍ଛେଇ ହୋଇଯାଏ । ସୁନାପକ୍ଷୀ ଧରାପଡ଼େନାହିଁ । ତାକୁ ଧରିବାକୁ ସହସ୍ର ସହସ୍ର ଜାଲ ଏଠିସେଠି ଫିଙ୍ଗାହୋଇ ଚିରିଯାଏ । ସବୁ କିରାତ କ୍ଳାନ୍ତହୋଇ ଦିନେ ଜାଲଟିକୁ ରଫୁ କରିବାକୁ କୌଣସି ଗଛମୂଳେ ବସିଯାନ୍ତି । ସୁନାପକ୍ଷୀ ନିରୋଳା ତାରା ଉପରୁ ଡେଣା ଝାଡ଼ିଦିଏ । ଶେଷ ଉଚ୍ଚାଟରେ ଜାଲ ଫିଙ୍ଗିଦେଇ କିରାତ ତାକୁ ଧରି ଓହ୍ଲିପଡ଼େ । ଜାଲଟି କେବଳ ପୁଳାଏ ପବନ ଛାଣିପକାଏ । କିରାତ ହାଂବୁଡ଼ି ପଡ଼ିଯାଏ । ଉଭୟଙ୍କ ଉପରେ ଗୁଡ଼ିଏ ଶୁଖିଲା ପତ୍ର ବୃଷ୍ଟି ହୋଇଯାଏ । ନୀରବ ଅନ୍ଧାରରେ କିଛି କାତର ବର୍ଷିଯାଏ ।

ପ୍ରବାଦ ଅଛି ଯେ ସୁନାପକ୍ଷୀଟିଏ ଏକଦା ଅଗ୍ନି ରୂପରେ ଧରାପଡ଼ିଥିଲା । ସେ ବିରଳ ମଧୁ ଉଦ୍ୟାନରେ ଚହଳ ପଡ଼ିଯାଇଥିଲା ଏବଂ ରକ୍ଷୀମାନେ ଘେରି-ଯାଇଥିଲେ ସେ ବୀର ପୁରୁଷଟିକୁ । ଲୁହା ଶିକୁଳିରେ ପାହାଡ଼ କାନ୍ଥରେ ତାକୁ ବାନ୍ଧିଦିଆଯାଇଥିଲା ଏବଂ ତାକୁ ପୋଷା ଶାଗୁଣାମାନେ ଛୀଞ୍ଚା ଖାଇ-ଯାଉଥିଲେ । ଆଉଥରେ କୁଆଡ଼େ ସମୁଦ୍ରରୁ ଉଠି ମହୁ ରୂପରେ ସେ ଶୂନ୍ୟେ ଶୂନ୍ୟେ ହରଣଚାଳ ହୋଇଯାଉଥିଲା । ଏ ରାଜ୍ୟରୁ କେହି ଜଣେ ଯାଇ ତାକୁ ଅଧିକାର କଲା । ସାଂଗେ ସାଂଗେ ଏକଚାଟିଆ ବେପାରୀମାନେ ତାଂକ ରାଜାଂକୁ କହି ସେ ବିଚାରାଟିର ମୁଣ୍ଡକାଟ କରିଦେଲେ । ସେଇ ଦିନଠାରୁ କଟା ମୁଣ୍ଡଟିଏ ପାଟି ମେଲେଇ ଶୂନ୍ୟ ଆକାଶରେ ପହଁରୁଛି । ମହୁ ବୋଲି ଜହ୍ନଟାକୁ ବାରଂବାର ଗିଳିଚାଲିଛି । ଯେଉଁ ଟିକକ ଚାଖି ଦେଇ ସେ ଅତୀତରେ ଥରେ ବାଉଳା ହୋଇଥିଲା, ତାକୁ କିନ୍ତୁ ଆଉ ଖୋଜି ପାଉନାହିଁ । ମଧୁ ସନ୍ଧାନ ଚାଲିଛି ଏ ଗୋଡ଼ି, ମାଟି, ପଥର ଏବଂ ଏ ଲୁଣିଆ ସମୁଦ୍ରମାନଂକରେ; ସ୍ଥାବର, ଜଂଗମ ଏବଂ ମଣିଷମାନଂକ ଭିତରେ ।

ବୋଧହୁଏ ଏ ଅଗ୍ନି ହିଁ ମଧୁ । ଏ ଆଲୋକ-ପିଣ୍ଡଗୁଡ଼ିକ ମଧୁବିନ୍ଦୁ । ସେ ଯେଉଁ ଜଳିଯାଉଛି ନାନା ରୂପ ଏବଂ ବର୍ଣ୍ଣରେ, ସେ ବହୁ ରଂଗର ଫୁଲ, ସେ ସବୁଜ ବଣ, ନେଳି ନେଳି ଆକାଶ, କଳାଘୁମର ମେଘ, ଘନନୀଳ ପାହାଡ଼, ସେ ଛଳଛଳ ଆଖି, ସେ ଓଠ ଭୂରୁ ଠାଣି, ରଂଗ—ସେ ସମସ୍ତ କ'ଣ ମଧୁ!!

ହୋଇପାରେ, ଏ ପବନ ହିଁ ମଧୁ । ପ୍ରଥମ ବର୍ଷାରେ ମାଟିର ବାସ୍ନା, ମାଳତୀ, ମରୁଆ, ଗଢଦଂଟର ସୌରଭ, ଶିଶୁର ଗନ୍ଧ, ଏ ଝଂକାର, ଏ କାକଳି, ଏ ଦରୋଟି ଲାଳାୟିତ ଶବ୍ଦ—ଏ ସବୁ କଣ ମଧୁ?

କିମ୍ବା ହୋଇପାରେ ଏ ପାଣି ହିଁ ମଧୁ । ତା'ହେଲେ ସେ ରଂଗ ଟହଟହ କମଳା ବଗିଚା, ସେ ଷଡ଼ରସର ବ୍ୟଂଜନ, ସେ ଛେନା, ଦୁଧ, ଲହୁଣୀ ଏବଂ ସେ ଚୁମ୍ବନଗୁଡ଼ିକ କ'ଣ ମଧୁ? ସେ ଚିକ୍କଣ ଉଷୁମ ମାଂସପିଣ୍ଡଗୁଡ଼ିକ, ସେ ଆଶ୍ଳେଷ, ସେ ଶୃଂଗାର କ'ଣ ମଧୁ?

ବହୁ ସହସ୍ର ଥର ଏମାନଂକୁ ଆସ୍ୱାଦନ କଲା ପରେ ବର୍ତ୍ତୁଳ ଜହ୍ନପରି ଆମର କଟାମୁଣ୍ଡ ବାଟେ ଏମାନେ ଗଳିପଡ଼ଂତି । ଆମେ ଜିଭ ଲଂବେଇ ଏମାନଂକ ପଛରେ ପୁଣି ଗୋଡ଼େଇଥାଉ । ଏଣୁ ମନେହୁଏ ଯେ ଏମାନେ କେହି ହେଲେ

ମଧୁ ନହୁଁତି ; ବରଂ ସୃଷ୍ଟିର ପ୍ରାରମ୍ଭରେ ଯେଉଁଠି ଅମୃତର ସ୍ୱାଦ ଥରେ ସ୍ପର୍ଶ କରିଥିଲା, ସେଇ ରଚନାର ସ୍ମୃତି ଯୁଗଯୁଗାବ୍ଧି ଧରି କ୍ଷୁଧା ରୂପରେ ବହୁକଛି ଏବଂ ତା'ରି ବାହୁରେ ଏ ସବୁ ମଧୁର ଜଣାପଡ଼ୁଛି । କ୍ଷୁଧା ହିଁ ତାହେଲେ ମଧୁ । ମନରେ ହେଉ, ଦେହରେ ହେଉ, କ୍ଷୁଧା ମାତ୍ରେ ସେଇ ଆଦିମ ସ୍ମୃତି । ସବୁ ଇଚ୍ଛା, ସବୁ ଆକାଂକ୍ଷା, ସବୁ ଅଭୀପ୍ସା ସେଇ ଏକମାତ୍ର ଅନୁସନ୍ଧାନ ଯାହା ହଜିଯାଇଛି ତା'ର ସନ୍ଧାନ ।

କଟାମୁଣ୍ଡଟି ହୁଏତ ତା'ର ଅନ୍ୟାନ୍ୟ ଅବୟବକୁ ଖୋଜୁଥାଏ । ଖୋଜୁଥାଏ ତା'ର ପୂର୍ଣ୍ଣତା । ଏଇ ପ୍ରୟାସରେ ସେ ପାଏ ମମତା, ପ୍ରେମ, ପ୍ରୀତି, ସ୍ନେହ, ସୋହାଗ ଏବଂ ଏସବୁ ଗୋଟାଏ ପ୍ରକାର ମାନସିକ ଅବୟବର ବିସ୍ମୃତି । ସେଥିରେ ସେ କ୍ଷୁଧାକୁ ଆଉରି ବିସ୍ତୀର୍ଣ୍ଣ କରେ । ଜିଭକୁ ଆଉରି ଲମ୍ବେଇଦିଏ ଏବଂ ଆଉରି ଗଣ୍ଡିଏ ବସ୍ତୁ, ଆଉରି ଗଣ୍ଡିଏ ଭାବ ଏବଂ ଆବେଗକୁ ନେଇ ପରୀକ୍ଷା କରେ । କେଉଁଠି ସତେ ସେ ଅମୃତ ଲୁଚିଗଲା? ହୁଏତ ଜୀବନରେ ହୁଏତ ମୃତ୍ୟୁରେ !! ଜୀବନକୁ ଆଖି ବୁଜି କୋଳି ଚାଖିଲାପରି ଅନେକ ପରଖିବା ପରେ ପାଇଛି ବୋଲି କହିହୁଏନାହିଁ । ମୃତ୍ୟୁରେ ବୁଡ଼ି ବାହାରି ହୁଏନାହିଁ । ଏଣୁ ସେଠି ମଧ୍ୟ କହିହୁଏନାହିଁ, ସେ ଅଛି ନା ନାହିଁ । ଯଦି ନିଶ୍ଚିତରୂପେ ଜଣାପଡ଼ିଯାଂତା ଯେ ତାହା ଏଠି ନାହିଁ କି ସେଠି ନାହିଁ, ମୋଟ ଉପରେ ମଧୁ ବୋଲି କିଛି ମାତ୍ର ନାହିଁ, ଗୋଟାଏ ପ୍ରକାର ସ୍ଥିର ଅବସ୍ଥା ଆସିଯାଂତା । ତେଣିକି ନଥିବା ବସ୍ତୁଟିକି ଭୁଲିଯିବା ପାଇଁ ଯୋଜନା କରାଯାଇ ପାରନ୍ତା । ନଚେତ୍ ଯଦି ସେଇଭଳି ନିଶ୍ଚିତରୂପେ ଜଣାପଡ଼ିଯାଂତା ଯେ ଏଇଟା ବା ସେଇଟା ବା ଏ ସମସ୍ତ ଯାହା କିଛି ଦିଶୁଛି ସବୁ ମଧୁ, ତେଣିକି ଆଖି ବୁଜି ପିଇଯିବା ଭଙ୍ଗୀରେ ଉଲ୍ଲସିତ ହେବାକୁ ପ୍ରସ୍ତୁତ ହୁଅନ୍ତେ ।

କିନ୍ତୁ ଅବସ୍ଥା ତା'ନୁହେଁ । ଏଠି ସେଠି କେବଳ ଗୋଟିଏ ଛାଇ ବେଳେବେଳେ ଦିଶିଯାଏ । ସେଇ ଆଭାସ ପାଇ ତାକୁ ମହୁରସରେ ଚେଙ୍ଗଟି ଭଳି ଆମେ ଗିଳିଦେଉ । ଏହା ଯେ ତାହା ନୁହେଁ, ଏତକ ଜାଣିବାକୁ ବାରମ୍ବାର ଅନେକ ଦୁଃଖର ମୂଲ୍ୟ ଦେବାକୁ ପଡ଼େ ; କିନ୍ତୁ ଚାଲିଥାଏ ବାଉଳା ମଧୁସନ୍ଧାନ ।

ପରିଶେଷରେ ଉତ୍କଟ ରାଗିଯାଇ କେହି ଜଣେ କହନ୍ତି, "ଶୁଣ, ଏସବୁ ନିରର୍ଥକ ପରିଶ୍ରମର ବ୍ୟାପାର । ମୁଁ ଦେଖୁଛି, ମୁଁ କହୁଛି, ମୁଁ ଶୁଣୁଛି—ମୁଁ ହିଁ ଖୋଜୁଛି । ମୁଁ ବଞ୍ଚିଛି, ଏବଂ ମରୁଛି । ଏଣୁ ମୁଁ ହିଁ ସବୁ । ମୁଁ ହିଁ ମଧୁ ।" ଯା ପରେ ତାଂକର ଚାଟିକବାଟ ପଡ଼ିଯାଏ, ବହୁବିଧ ଜଗତଟି ଉଭେଇ

ଯାଏ—ସୁଦୂର-ବିସ୍ତୃତ ତାରା ରାଜ୍ୟରୁ—ଅବୟବଗୁଡ଼ିକୁ ଘୋଟେଇଥାଣି ଅସଂଖ୍ୟ ବସ୍ତୁ ଉପରୁ ଜିଭଗୁଡ଼ିକୁ ଓହ୍ଲେଇ ଆଣି, ମୁଁ 'ଗୋଟାଳି ବାନ୍ଧିଯାଏ । ନିଜକୁ ନିଜେ ଢୋକିଦେଇ ଗୁମ୍ ହୋଇଯାଏ । ତେଣିକି ମଧୁ ନାହିଁ କି ଅମଧୁ ନାହିଁ—ଖୋଳା ଖୋଜି ସବୁ ବନ୍ଦ । ପାଣିକୁଆ ଯେମିତି ବୁଡ଼ାମାରି ଅଦର୍ଶନ ହୋଇଯାଏ, ମନେହୁଏ ଯେ ସେ ଆଉ ବାହାରିବ ନାହିଁ ; କିନ୍ତୁ ଆଉ ଠାଏ ପୁଣି ମୁଣ୍ଡ ଟେକି ସେ ଅନାଏ ଏବଂ ପବନ ଶୋଷେ ; ସେଇଭଳି ଏ ସମାହିତ ମହାତ୍ମାମାନେ ସେ ଗଭୀରା ଭିତରୁ ଉଠିଆସି ପୁଣି ଏ ବହୁବିଧ ସଂସାରକୁ ଚାହିଁବାର ଦେଖାଯାଏ । ମଧୁସ୍ନାନ ପରେ ତାଙ୍କ ଆଖିକୁ ସବୁ ମଧୁମୟ ଦିଶିବା ସ୍ୱାଭାବିକ । "ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ ।" ସେମାନେ ହିଁ ଶେଷକୁ ଏଇ ମଧୁବାର୍ତ୍ତା ପ୍ରଚାର କରନ୍ତି ଏବଂ ଗୁଡ଼ିଏ ସଢୋଟ ସଂସାରୀ ମଣିଷଙ୍କୁ ବାଉଳା କରିପକାନ୍ତି । କିନ୍ତୁ ତାଙ୍କ ଭିତରୁ ଯେଉଁମାନେ ଅସଂଖ୍ୟ ପଥର ପଡ଼ିବା ସହି ସହି ସଂସାର ଭିତରେ ଘର କରି ରହିଛନ୍ତି, ସେମାନେ ଆଦୌ ବିଚଳିତ ହୁଅନ୍ତିନାହିଁ । ବରଂ ତାଙ୍କ ମୁହଁରେ ଶୁଖିଲା ହସଟିଏ ଦେଖାଯାଏ । ସେ କହନ୍ତି, "ଆମେ ଏ ମହାତ୍ମାଙ୍କୁ ସମ୍ମାନ କରୁଛୁ । ସେ ଆମ ଭିତରୁ ଜଣେ ବୀରପୁରୁଷ । କିନ୍ତୁ ସେ ଯାହା ପାଇବାକୁ ବୁଡ଼ାମାରି-ଥିଲେ ସେ ବି ସେଇଆ । ଦୂରରେ ସବୁଠି ଟିକିଏ କିମିଆ ଲାଗିଲା ପରି ଦିଶେ । ସେ ବି ପାଇ ନାହାନ୍ତି । ସେଇଠୁ ଫେରିବା ପରେ ତାଙ୍କ ଚାହିଁବା ଢଙ୍ଗ ଟିକିଏ ବଦଳିଯାଇଛି । ମାତ୍ର ଏ ବସ୍ତୁ ଯିମିତି ଥିଲେ ସେମିତି । ଏ ସଂଗ୍ରାମ, ଏ ସନ୍ଧାନ, ଏ ବିଡ଼ମ୍ବନା ଯେମିତି ଥିଲା ସେମିତି । ଏଣୁ ବୋଧହୁଏ ଏଠି ଆଉ କିଛି ନାହିଁ । କେବଳ ଦୁଃଖ ସତ୍ୟମ୍!



# ଦେବକୀ

ଦ୍ୱାପର ଯୁଗରୁ ଏ ପର୍ଯ୍ୟନ୍ତ ଯୋଡ଼ିଏ ଆଖି ଅହରହ ଲୋତକ ବର୍ଷା କରିଚାଲିଛି । କାରାକକ୍ଷର ଅନ୍ଧାର ଭିତରେ ଉଦାସ ସେ ଦୁଇଟି ଆଖି ଏବଂ ସେ ଆଖିର ଲୋତକ । ସେ ଲୋତକରେ ରୋଦନ ନାହିଁ ତାହା ସେ ଆଖିମାନଙ୍କର ସ୍ୱାଭାବିକ ଆତ୍ମପ୍ରକାଶ । ସେ ଆଖିରେ ଜ୍ୟୋତି ନାହିଁ, କେଉଁ କାଳୁ ଜ୍ୟୋତିର ହୀରାକଣିକାଗୁଡ଼ିକ ସେ ଲବଣାକ୍ତ ସ୍ରୋତରେ ଧୋଇହୋଇ ଚାଲିଗଲେଣି । ସେ ନୀରନ୍ଧ୍ର କାରାଗାରରେ ସୂର୍ଯ୍ୟ ନାହିଁ ତାକୁ ଉଦ୍ଦୀପ୍ତ କରିବାକୁ । ପବନ ନିଶ୍ଚଳ । ଶୀର୍ଣ୍ଣ ନୁପୁର କ୍ରୁଦ୍ଧ ଉପରେ- ଲୁହା ଶାଙ୍କୁଳିର ଉତ୍ପୀଡ଼ନ ମଧ୍ୟ ଅନେକ ଋଣ । ଆଠଟି ଶ୍ରାବଣର ଗର୍ଭ ବେଦନା, ଶୋଣିତର ସ୍ରୋତରେ ପ୍ରସ୍ଫୁଟିତ ଆଠଟି ନବଜାତ ପଦ୍ମ ସବୁ ସ୍ୱପ୍ନ ପରି ପହଁରି ଆସନ୍ତି । ତା'ପରେ ଶୁଭିଯାଏ ସେଇ ବିକଟ ଅଟ୍ଟହାସ, ଦିଶିଯାଏ ନିଷ୍ଠୁରଣ ସେଇ ପାଷାଣ ବକ୍ଷରେ ଅସହାୟ ଶିଶୁର ରକ୍ତ । ଜନନୀର ହୃଦୟ ପୁଣି ବିଦାରିତ ହୁଏ । ଝରିଆସେ ଉତପ୍ତ ଅବାରିତ ଅଶ୍ରୁ । ମଳିନବସନା ବନ୍ଦିନୀ ଦେବକୀ ଶରୀର କଷଣରେ କମ୍ପିଉଠନ୍ତି । ନିସ୍ତବ୍ଧ ଶିଳାଗୃହର ପଥର ପାଚେରି ଦେହରେ ସେ କମ୍ପନ ଲୀନ ହୋଇଯାଏ...ଶୁଭେ ବସୁଦେବଙ୍କର ଶ୍ୱାସପତନ । ଯାତନାର ଆଉ ଏକ ସହଯାତ୍ରୀ ବନ୍ଧୁ ପାଇଁ ଦେବକୀଙ୍କର ଶ୍ୱାସ ଦୀର୍ଘାୟିତ ହୋଇଯାଏ । ଏଇ ବସୁଦେବ ବହନ୍ତି ନା ଅଷ୍ଟମ ଗର୍ଭର ଶିଶୁ ଗୋପନରେ ବହୁଛି ବୋଲି ...କେତେଟିଏ ହେବଣି ସେ ନୀଳ ସ୍ୱପ୍ନ?...କେମିତି ଶୁଭୁଥିବ ତା'ର ଦରୋଟି କଥା?...ଛୋଟ ପିଲାଙ୍କ ଦରୋଟି କଥା ସତେ କେମିତି ଶୁଭେ ଯେ!!...ଠିଆହୋଇ ସେ ଚାଲିବଣି ସରା ! କେଜାଣି !...ସେ ଉଭାହେଲେ ଧରଣୀ ମଡିଲା ପରି ଦିଶୁଥିବ ନା? କଳା ଭଅଁର ପରି ଥୋଲା ଥୋଲା ବାଳ ଭିତରେ ତା'ର ସେ ପଦ୍ମପାଖୁଡ଼ା ପରି ଆଖି, ସେ ଠିଆ ଠିଆ ଭୁରୁ, ନାକ, ଓଠ, କପାଳ, ଚିବୁକ ନାହିଁ ନଥିବା ସୁନ୍ଦର ଦିଶୁଥିବ ନା ! ହସି ଦେଲେ ସେ ମହୁଁରୁ ସୁଧା ଝରିପଡୁଥିବ ତ ! —ଆଃ କେତେ ରାତି ଆଉ ଅଛି କେଜାଣି? ଏ ରାତି କ'ଣ ପାହିବ ନାହିଁ? ଏଇଟା ସତେ ରାତି ନା ଦିନ? ବର୍ଷର କେଉଁ ଋତୁ ଏଇଟା? ଏବେ ଏ ନିଷ୍ଫଳ ଶ୍ରାବଣଗୁଡ଼ିକ ଏମିତି ନୀରବରେ ଆସି କେତେବେଳେ ଚାଲିଯାଉଛନ୍ତି ! ସାଦରେ ଉଦ୍ଭକର ପୀଡ଼ା । ଅପେ ଅପେ ଦୂରନ୍ତ କଷଣ । ଏବଂ ଅମାନିଆଁ ସେ ଆଖିର ଲୋତକରେ ନୀରବ ଶ୍ରାବଣ ।

ବସୁଦେବଙ୍କର ଶ୍ୱାସ ଛନ୍ଦ କ୍ରମଶଃ ଭାଂଗି ଯାଉଛି । ଗୋଟିଏ ରାତ୍ରିରୁ ସେ ହୁଏତ ହାରିଉଠିବେ ଆଉ ଗୋଟିଏ ରାତ୍ରିର ଯାତନାକୁ । ବାନେଇବେ ଶୁଣି- ବାକୁ ଦେବକୀ ଶୋଇପଡ଼ିଛନ୍ତି ନା କାନ୍ଦୁଛନ୍ତି । ତା'ପରେ ହୁଏତ ପୁରୁଣା ଅଭ୍ୟାସରେ କହିବେ, 'କାନ୍ଦନା ଦେବକି । ସେ ତ ଗୋପରେ ବଢ଼ୁଛି—ଚିନ୍ତା କ'ଣ? ନନ୍ଦଘରେ ତ କିଛି ଅଭାବ ନାହିଁ । ସର, ଲବଣି, ଗୋଟିକା, ଅଧାମର ପ୍ରଚୁର ଭଣ୍ଡାର ସେ ଗୋପପୁର । ସେଠି କଣ ତୁମ ପୁଅ ଅଣହେଳା ପାଉଥିବ ବୋଲି ଭାବୁଛ? ଆରେ ନାଇଁ ମ, ଯେତେହେଲେ ଯଶୋଦା କ'ଣ ତା'ର ରକ୍ଷଣୀର ଧନକୁ ଆଖି ଆଗରୁ ଆଡ଼ କରିଦେଉଥିବ? ବାଳୁତ ସ୍ୱଭାବରେ ଦହି ହାଣ୍ଡିଟାଏ ଭାଂଗିଦେଲେ ସେ ଛାଟ ଧରି ଗୋଡ଼େଇଯାଉଥିବ ବୋଲି ଭାବୁଛ? ନା, ନା, ତା'କଣ ସମ୍ଭବ? ତା'ର ସେ ଅଲିଅଳ ମୁହଁକୁ ଚାହିଁ- ଦେଲେ ତା ହାତରୁ ଛାଟ ଫିଙ୍ଗିଦେଇ ସେ ନିଶ୍ଚୟ ତାକୁ କୋଳକୁ ଟାଣି- ନେଉଥିବ । ଆଉ ନନ୍ଦ? ସେ କେବେ ନିର୍ଦ୍ଦୟ ହୋଇ ପାରିବ ନାହିଁ । ଷୋଳସହସ୍ର ପ୍ରଜା ଥାଉ ଥାଉ ସେ କଣ ତା'ର ନୟନପିତୁଳାକୁ ବଣକୁ ପଠାଇ ଦେଉଥିବ ଗାଈ ଜଗିବା ପାଇଁ?— -ସେଠି ଯମୁନା ନଈ ଭାରି ଗଭୀର । ସେଠା ବଣରେ ଅଜଗର ଅଛି—ଏ କଥା କଣ ସେ ଜାଣେ ନାହିଁ? ତା'ର କଣ ଆଉ ଫଳିବାର ଆଶା ଅଛି କି?

ବସୁଦେବଙ୍କ ଶ୍ୱାସରେ ବତାସିଆ ଶ୍ରାବଣ . . . 'କାନ୍ଦନା, ଶୁଚିସ୍ମିତେ! ମହାପୁରୁଷ- ପ୍ରସବିନୀ, ପୁଣ୍ୟଗର୍ଭା ଦେବକୀ! ତୁମର ପୁତ୍ର ମାନବ ନୁହେଁ ଜନନୀ! ଧର୍ମର ସଂସ୍ଥାପନ ପାଇଁ ସେ ସ୍ୱୟଂ ପୁରୁଷୋତ୍ତମ ଅବତାର ଗ୍ରହଣ କରିଛି । ସେ ହିଁ ଏ ଅଖିଳ ବ୍ରହ୍ମାଣ୍ଡର ଅଧୀଶ୍ୱର । '—ବସୁଦେବଙ୍କର ସ୍ତୋତ୍ରୀୟ ସ୍ୱରରେ କୌଣସି ଏକ ଦୂରସ୍ଥ ଦେବାଳୟର ଗମ୍ଭୀର ଘଣ୍ଟାଧ୍ୱନୀ ।

'ରାତି ଆଉ କେତେ ଅଛି ବସୁଦେବ? ଏ ରାତି କଣ କେବେ ଆଉ ପାହିବ ନାହିଁ? ଏତେ ବର୍ଷ ଧରି କଣ ସେଇ ଗୋଟିଏ ଶ୍ରାବଣ ବର୍ଷିଲାଗିଛି? ଆକାଶରେ ସେମିତି ନୀରନ୍ଧ୍ର ମେଘ, ସେମିତି ରାତ୍ରି, ସେମିତି ଅନ୍ଧାର? ପିଲାକୁ ନେଇ ସତେ କୋଉଠି ଛାଡ଼ିଦେଇ ଆସିଲ ଯେ?'

ବାସ୍ତବିକ ସେ ଆଖିଯୋଡ଼ିକରୁ ଶ୍ରାବଣ ଶୁଖିବାର ନୁହେଁ । ସେ ରାତ୍ରି ପାହିବାର ନୁହେଁ ।

ଶୁଣନ୍ତୁ ଦେବକୀ ; କାଲି ରାତ୍ରିର ପ୍ରହରୀ କଥାବାର୍ତ୍ତା କରୁଥିଲେ । ଜଣେ କହୁଥିଲା ଯେ ମଥୁରାରେ କଣ ଧନୁ-ଉତ୍ସବଟାଏ ହେଉଛି । ବହୁ ଆଡ଼ମ୍ବରରେ

ରାଜା କଂସ ଧନୁଯାତ୍ରା କରାଉଛନ୍ତି । ଆଉ କହୁଥିଲା କୃଷ୍ଣ-ବଳରାମଙ୍କୁ ନେଇ ନନ୍ଦରାଜା ଗୋପପୁରରୁ ଆସୁଛନ୍ତି । ଏ କୃଷ୍ଣ-ବଳରାମ କିଏ ଦେବକୀ? ମୁଁ ତ ଜାଣେନା ସେ କଣ ଜଣେ ନା ଦୁଇଜଣ? ଏ ନାଁ ତ ଶୁଣିବାର ମୋର ସ୍ମରଣ ହେଉନାହିଁ । ଉତ୍ସବ ଦେଖିବାକୁ ପିଲାଏ ପିନା ଶୁଣା କରନ୍ତି—ଏ ନନ୍ଦ ସେଥିରେ କାହିଁକି ମାତିଛନ୍ତି? ଯଦି ଆସୁଛନ୍ତି, ସାଂଗରେ ସେ ପିଲାଟିକି ନେଇ ଆସନ୍ତା ନାହିଁ? ନା, ବରଂ ନ ଆସନ୍ତୁ, କାଳେ କଂସ ଚିହ୍ନିଦେବ । ସେ ଥାଉ ଯମୁନାର ଆର ପାରିରେ । ବଣରେ ଗାଈ ଜଗି, ଗୋପଦାଂଡରେ ଧୂଳିଧୂସର ହୋଇ ଫେରୁଥାଉ ପଛେ, ସେଇଠି ବୃନ୍ଦାବନ ଅରଣ୍ୟର ଆଢୁଆଳରେ ଥାଉ । କଂସର ଉଗର ଖୋଜି ଖୋଜି ତାକୁ ପାଇବେ ନାହିଁ ।—ଆଶଙ୍କା... ଉଦ୍‌ବେଗ, ଅଧାରିତ କାରାକକ୍ଷରେ ଅସେ ଅସେ ଯାତନା !

'ହେ ଶୁଣୁଛ; ଶୁଣୁଛ ବସୁଦେବ? ଦ୍ୱିତୀୟ ଯାମର ପ୍ରହରୀ କହୁଥିଲା, ସେ ଦୁଇଜଣ କୁଆଡ଼େ ଦୁଇ ଭାଇ! କୃଷ୍ଣ ଆଉ ବଳରାମ ଦୁଇ ଭାଇ! ତା' ନାଁ କଣ ତା'ହେଲେ କୃଷ୍ଣ? ଫୁଟିଲା ତମାଳ ଫୁଲ ପରି ଯା'ର କାଂତି, କନ୍ଦର୍ପ ପରି ଯା'ର ଠାଣି, ତା'କୁ କଣ ଏମିତି ନାଁ ଦିଅନ୍ତି? ପୁଅ ହୋଇ ଏଡ଼େ ସୁନ୍ଦର ଭଲା ଆଉ କାହାରି ଘରେ ଅଛି? ଏଡ଼େ ସୁନ୍ଦର ପୁଅକୁ ପୁଣି ଏମିତି ଗୋଟାଏ ନାଁ? ଗୋରୀ ଗୋରୀ ଗୋପାଳୁଣୀଗୁଡ଼ିକ ଘେରିଯାଉଥିବେ ମୋ ନୀଳସୁନ୍ଦରକୁ । ଆଖିରୁ ପଲକ ଲିଭିଯାଉଥିବ । ଓଠରୁ କଥା ହଜିଯାଉଥିବ । ବିହ୍ୱଳ ହୋଇ ଡାକିଦେଉଥିବେ—କୃଷ୍ଣ!!ଯେତେ ସୁନ୍ଦର ହେଲେ କଣ ହେବ-କାଳିଆ ପୁନାଟା ତ !କୃଷ୍ଣ ପଚେ କେତେ ସୁନ୍ଦର ନାଁ !...ହେ ଶୁଣୁଛ, ବସୁଦେବ !କୃଷ୍ଣ ଆସୁଛନ୍ତି ଧନୁଯାତ୍ରା ଦେଖିବାକୁ, ନନ୍ଦ ସାଂଗରେ ମଥୁରାକୁ ଆସୁଛନ୍ତି । ଅକ୍ରୁର ରଥ ନେଇ ଯାଇଛନ୍ତି ତାଂକୁ ସବୁ ଆଣିବାକୁ । କଂସ କଣ ସବୁବେଳେ ଅସୁର ହୋଇ ରହିଥିବ କି? ସେ ପରା ମାମୁଁ । ସେ କଣ ତା'ଭଣଜାକୁ ହୀନିମାନିଆ କରି ରଖେଇବ? ମୁଁ କଂସକୁ ଜାଣିନାହିଁ? ମୁଁ ପରା ତା'ସୋଦର ଭଉଣୀ!—ଆଶା...; ଆନନ୍ଦ...; ସେହି ଅଧାରିତ କାରାକକ୍ଷରେ ସ୍ତୁପ ସ୍ତୁପ ବିମୁଗ୍ଧତା !!

ପ୍ରହରୀ କହୁଛନ୍ତି—'କଂସ ଛଳ କରି ଡକେଇ ଆଣୁଛନ୍ତି । ସେ କଣ ଜାଣୁନାହିଁ ଏ କୃଷ୍ଣ କିଏ? ଏ ଧନୁ-ଉତ୍ସବ ତଚ୍ଛା ଆଳଟାଏ ପିନା ?ସେ ଥରେ ତା' ହାବୁଡ଼ରେ ପଡ଼ିଗଲେ କଂସ କଣ ଛାଡ଼ିବ?'

'ରକ୍ଷ ହରି! ରକ୍ଷ ଦୀନାର୍ତ୍ତିହାରୀ!ଅବୋଧ ବାଳକକୁ ରକ୍ଷା କରିଯାଅ ଚକ୍ରପାଣି ! ବିଳପିଉଠନ୍ତି ବସୁଦେବ ।

ଅକ୍ରୂର ତା'ହେଲେ କେବଳ ଛଳନା? କଂସ ମାତ୍ରେ କ୍ରୂର? ସେ କାହୁଁ ବୁଝିବ ଶିଶୁର ଅସହାୟତା? ..ପୁତ୍ରଶୋକବିଧୁରା ଦେବକୀର ଯାତନା?

ପ୍ରବଳ ବାତ୍ୟାରେ ଆନ୍ଦୋଳିତ ହୋଇଉଠେ ଦେବକୀଙ୍କର ତନୁଲତା । ତାଙ୍କ ମାତୃକୋଳର ଚିରନ୍ତନ ଶୂନ୍ୟତା ହାହାକାର କରେ । ତାଙ୍କୁ ଶୁଭିଯାଏ ଆଦିମ ସେଇ ବିକଟ ଅଟ୍ଟହାସ । ବିଶିଯାଏ ନିଷ୍ଠୁରଣ ସେଇ ପାଷାଣ–ବକ୍ଷରେ ଅସହାୟ ଶିଶୁର ରକ୍ତ । କଂସ ତା'ହେଲେ ଚିରକାଳ ସେଇ କଂସ;ସେ ହିଁ ତ ଯୁଗଯୁଗର ପୁଞ୍ଜୀଭୂତ କ୍ରୂରତା !!

ପ୍ରହରୀ ପୁଣି କହୁଛି—'ମହାବଳିଆର ସେ ଗଉଡ଼ପୋକା । ଅଘା,ବକା,ତୃଣା, ଶକଟା ସମସ୍ତଙ୍କୁ ସେ ଅବଲୀଳାକ୍ରମେ ମାରିସାରିଛି । କଂସର ପ୍ରାଣେ ଭୟ, କାଳେ ତାଙ୍କୁ ମଧ୍ୟ ସେ ଭେଳପଡ଼ିଲେ ମାରିଦେବ ।'

'ଶୁଣୁଛ,ଶୁଣୁଛ ଦେବକୀ?ପ୍ରବଳପ୍ରତାପୀ କଂସ କୁଆଡ଼େ ତାଙ୍କୁ ଭୟ କରେ! ମୁଁ ତମକୁ କହୁଥିଲି ନା—ସେ ମଣିଷ ନୁହେଁ ବୋଲି? ସେ ସେଇ ବିରାଟ–ପୁରୁଷ,ଯା'ର ଭ୍ରୂଭଙ୍ଗମାତ୍ରେ ଏ ସୃଷ୍ଟି ସ୍ଥିତି ଲୟ ପୁନରାବୃତ୍ତ ହୁଏ । ତାହାରି ପାଇଁ ଆକାଶରୁ ଦୈବୀବାଣୀ ହୋଇଥିଲା । କଂସ ଜାଣେ ତାର ଆଉ ନିସ୍ତାର ନାହିଁ ।'
ବେଦମନ୍ତ୍ରର ଗମ୍ଭୀର ଧ୍ୱନି ବସୁଦେବଙ୍କର କମ୍ପିତ ଅଧରରେ ଲୀନ ହୋଇଯାଏ ।

'ଏଇ ଗୋଟିଏ ରାତି ଭିତରେ ବାରବର୍ଷ ବିତିଗଲାଣି ବସୁଦେବ! ଏ କନ୍ଦି–ଶାଳାରେ ତ ନବମୀର ସୂର୍ଯ୍ୟ ଆହୁରି ଉଇଁନାହିଁ । ବାରବର୍ଷର ପୁଅ କେଡ଼େ–ଟିଏ ହେବଣି? କେମିତି ସେ ଦିଶୁଥିବ? ଏ ଫୁଟିଗଲା ଆଖିରେ ଥରେ ଦେଖନ୍ତି କି? କଂସକୁ କହିଲେ କଣ ଶୁଣିବ? ବାରବର୍ଷର ନନ୍ଦକୁମର କୃଷ୍ଣ । ସେ କିଏ? ମୁଁ ତ ତାଙ୍କୁ ଜାଣେନା!ସେ ସତେ କିଏ ବସୁଦେବ? ମୁଁ ତ ତାଙ୍କୁ ଜାଣେନା !!'

'ମୁଁ ବି ଜାଣେନା ଦେବକୀ—ସେ ଅପ୍ରାକୃତ ପୁରୁଷ କିଏ? ସେ କାହିଁକି ଓହ୍ଲାଇ ଆସିଛନ୍ତି ଆମର ପିତୃତ୍ୱକୁ ଅବଲମ୍ବନ କରି!'

ଉଭୟେ ବିମୂଢ଼—ଉଭୟେ ଯାତନାକ୍ଲିଷ୍ଟ । ଅସୂର୍ଯ୍ୟ କାରାକକ୍ଷରେ ବିଗଳିତ ଯୋଡ଼ିଏ ଅଶ୍ରୁଧାର କେବଳ !!

ଗୁରୁ ଗୁରୁ ପାଦଶବ୍ଦଗୁଡ଼ିଏ ପାଖେଇ ଆସନ୍ତି । ଅପ୍ରତ୍ୟାଶିତ ଭାବରେ ଅର୍ଗଳ ଫିଟିବାର ଶବ୍ଦ ଶୁଭେ । ରାଜାଦେଶରେ ହଠାତ୍ ଫିଟିଯାଏ କାରାକକ୍ଷର ବଜ୍ରକବାଟ । ଅଦୃଶ୍ୟ ରହି ମହାସମ୍ଭ୍ରମରେ ପ୍ରବେଶ କରନ୍ତି ଦେବତା, ଗନ୍ଧର୍ବ ଓ ଦଶଦିକ୍‌ପାଳ । ପ୍ରବେଶ କରନ୍ତି ସୂର୍ଯ୍ୟ ଏବଂ ପବନ ।

ପ୍ରହରୀ ଶାଙ୍କୁଳି ଛିନ୍ନ କରି ଦିଅନ୍ତି । ନିବେଦନ କରନ୍ତି ରାଜାର ନିମନ୍ତ୍ରଣ । ଏ ହିଁ ତ ମହାଗୌରବିତ ପରମପୁରୁଷଙ୍କର ଜନକ ଜନନୀ । ବିଂଶତି ବର୍ଷର କାରାଯାତନାରେ ଶୀର୍ଣ୍ଣତନୁ, ଜୀର୍ଣ୍ଣ ପକ୍ୱକେଶ ଏ ଦୁଇଟି ପ୍ରାଣୀ ତେବେ କିଏ? ଏଇମାନେ କଣ ସେଇ ଅପାର ପୁଣ୍ୟ ଅର୍ଜ୍ଜନ କରିଥିବା ଯୁଗନ୍ଧର ପୁରୁଷର ଜନୟିତା ଏବଂ ଜନୟିତ୍ରୀ?

ଅକସ୍ମାତ୍ ଦିବାଲୋକରେ ବସୁଦେବ କାହାକୁ ଚିହ୍ନି ପାରୁନାହାନ୍ତି । ଏ କଣ ସେଇ ଶୁଚିସ୍ମିତା ଦେବକୀ? ମହାପୁରୁଷପ୍ରସବିନୀ, ପୁଣ୍ୟଗର୍ଭା ଜନନୀ ଦେବକୀ??

ଉଭୟ ଆଖିରୁ ଚିରଧାର ଅଶ୍ରୁ ଶୁଖିବାର ନୁହେଁ । ସେ ଦୃଷ୍ଟିରେ ଜ୍ୟୋତି ନାହିଁ, ସେ ଲୋତକରେ ରୋଦନ ନାହିଁ ।

ରାଜସଭାର ମଞ୍ଚ ଉପରୁ ଦେବକୀ କାହାକୁ ଚିହ୍ନି ପାରୁ ନାହାନ୍ତି ! ତାଙ୍କର ନିଷ୍ପ୍ରଭ ଆଖିରେ ବିଜଡ଼ିତ ହୋଇଯାଉଛି, ବାଷ୍ପାକୁଳ ହୋଇ ଯାଉଛି ଏକକ ବସ୍ତୁ । ଆଖିରୁ ଲୁହ ଟିକିଏ ଶୁଖିଗଲେ ମଞ୍ଚ ତଳକୁ ଦିଶିଯାଉଛି ଗୋଟିଏ ସ୍ନିଗ୍ଧ ସୁଠାମ କିଶୋର । ବାର କି ତେର ବର୍ଷ ହେବ ସଖ ! ଏଇ କଣ କୃଷ୍ଣ?? ଏତିକିରେ ଉଚ୍ଛୁଳିଉଠେ ଅଶ୍ରୁଭରା ହୃଦୟ ; ଉଚ୍ଛୁଳିଯାଏ ଲୁହ । ଇନ୍ଦ୍ରନୀଳ ବର୍ଣ୍ଣ ଛୁଟିକିପଡ଼େ ସାରା ଆକାଶ । —'ନା, ମୁଁ ତ ଯାହାକୁ ଜାଣିନାହିଁ– ଏ ତ କେବେହେଲେ ମୋର କୋଳ ମଣ୍ଡନ କରିନାହିଁ । ଯାହାକୁ ତ କେବେ ମୁଁ ଥନ ଲାଗି କ୍ଷୀର ପିଆଇ ନାହିଁ । ମୁଁ ଗର୍ଭଧାରିଣୀ ସତ, କିନ୍ତୁ ମାତୃତ୍ୱ କଣ ମୁଁ ଜାଣେନା । ବସୁଦେବ କହୁଛନ୍ତି—ଏ କୁଆଡ଼େ ପରମପୁରୁଷ । ହୋଇଥିବ, ମୁଁ ଜାଣେନା । ମୁଁ ସେଇ ଚିରରୋରୁଦ୍ୟମାନା ପୁତ୍ରଶୋକବିଧୁରା ବିଡ଼ମ୍ବିତା ଦେବକୀ !!'

କ୍ଷମା କର ଜନନୀ, ଏ ପରମପୁରୁଷଟିକୁ କ୍ଷମା କର !! କ୍ଷମା କର ଏ ଅସହାୟ ବସୁଦେବଗୁଡ଼ିକୁ, ଏବଂ କ୍ଷମା କର ଏ ସମସ୍ତ ଭ୍ରାତୃକୁଳ କଂସମାନଙ୍କୁ !! ସର୍ବସହା ଦେବକୀ ଗୋ ; ତୋର ଦୁରନ୍ତ କଷଣ ପାଇଁ ଅପରାଧୀ ଆମେ ସମସ୍ତେ କେବଳ ଅସୁର !

## ବୁଇଟି ଚିଠି

'ବଂଧୁ'ଠଉଁ ଅଧିକ କିଛି ସମ୍ବୋଧନ କଲେ ଚିଠି ବାଉ ହାତରେ ପଡ଼ି ଯାଇପାରେ । ତମ ଅନୁପସ୍ଥିତିରେ ଏବେ ହାତେ ହାତେ ବୁଝୁଛି ଯେ ଡାଲି ତେଲ ଲୁଣ ସବୁ ଥାଇ କଂଚାମାଲଠାରୁ ଆହାର ବୋଲିବା ପଦାର୍ଥର ଦୂରତା କେତେ ! ବୁଝୁଛି ଯେ 'ମହୁଁରେ ଆଣି ସବୁ ହାବୁଡ଼େଇ ଦେଲେ' ମଧ୍ୟ 'କେବଳ ସିଝେଇ କୁଢ଼େଇ ଦେବା' କ୍ରିୟାଟା ଅତତଃ ସେତେ ସହଜ ନୁହେଁ, ଯେତେଟା ମୁଁ ଭାବିଥିଲି । ପୁଣି ବୁଝୁଛି ଯେ ସେଇ ବୁଟା ଢେଡି, ଶୁକୁଟା ପୋଟଳ ଏବଂ ଜାମୁକୋଳିଆ ଆଳୁରୁ କାହିଁକି ଓଲିକେ ଗୋଟାଏ ରେଖାଁ ନୂଆ ବ୍ୟଞ୍ଜନ ଜନ୍ମ ନେଇ ପାରନ୍ତି ନି, ଏବଂ ବୁଝୁଛି ଯେ ମୋ ଭଳି ଆପଦ୍‌-ଗ୍ରସ୍ତ ଅବସ୍ଥାରେ ଚାଉଳ ଡାଲି ସରିବା ମାତ୍ର ତେନ୍ତୁଳି ଏବଂ ଲିବକଢ଼ିକୁ ଏକାଠେଇ ସିଦ୍ଧ କରି ଲୁଣ ପକାଇବାକୁ ଭୁଲି ଯାଇଥିଲେ ସୁଦ୍ଧା ଉତ୍ତମ ଆହାର ରୂପେ ଭୋଜନ କରାଯାଇ ପାରେ । ଆଉ ତ ଯାବତ୍ ଚନ୍ଦ୍ରାର୍କେ ନୂଆ ତିଅଣ ରୂପକ ଅସମ୍ଭବ ସୃଷ୍ଟି ବିଷୟରେ ତମକୁ ଉଲଗୁଣା ଦେବି ନାହିଁ, ଏଣିକି ମଧ୍ୟ କହିବି ନାହିଁ—'କିଓ, ସେଇ ହାଣ୍ଡିଶାଳଟାରେ କାହିଁକି ଚୁଲିଟାକୁ ଅନେଇ ବସିଛ? ବାହାର ପିଣ୍ଡାରେ ଆରାମ ଚୌକିରେ ବସି ସକାଳର ପେପର-ଟା ଦେଖିଲେ କେମିତି ହୁଅନ୍ତା, ଯେମିତି ମିସେସ୍ ବାନାର୍ଜି, ମିସେସ୍ ମୂର୍ତ୍ତି କରନ୍ତି ' ଝାଉଁ କାଠ କଞ୍ଚା ସର ସର ଥାଇ ଜଳିବାର ପ୍ରସିଦ୍ଧି ଥିଲେ ମଧ୍ୟ ତାକୁ ଅହରହ ମୁହେଁଇବାକୁ ଅଟାକୁ କାନ୍ଥରେ ଡିରା ଦେଇ ନ ବସିଲେ, ପ୍ରାଣରୂପୀ ଅନ୍ନ ସ୍ୱରୂପ ପ୍ରକାଶ କରନ୍ତି ନାହିଁ । କିଛି ସମୟ ସେଇ ଚୌକିରେ ହେଡଲାଇନ୍ସ୍ ଦେଖୁ ଦେଖୁ ତମକି ଉଠି ଧୂଆଁର ବ୍ୟୂହ ଭେଦି ଗଲେ ଖତେଇ ହେଲାପରି କିଛି କହୁଳା ପୋଡ଼ଖୁଟା ଏବଂ ହାଣ୍ଡିରୁ ତେଲୁଣି ଟେକି ଦେଖିଲେ ତଳିରେ କିଛି ଅବିକୃତ ତଣ୍ଡୁଳ ଉପରେ କିଛି ଜଳ ଜଳ ବାମ୍ଫୁଆ ଫୁଟୁଆଣି ଦେଖିବା ଅତି ସ୍ୱାଭାବିକ କଥା !

ସନ୍ତୁଳା, ବେସର, ତରକାରୀ, ଅମ୍ବିଳ, ଭଜା ଆଦି ସବୁ ସେଇ ପରିବା ଜାତୀୟ ହୋଇଥିବାରୁ ଗୋଟିଏ ସର୍ବମିଶ୍ରିତ ଘାଣ୍ଟରେ ସମସ୍ତେ ରହିଯିବା ସର୍ବବାଦି-ସମ୍ମତ; ପୁଣି ଡାଲିଟା ତ ସେଇ ସିଝା । ତାକୁ ଯା ଘାଣ୍ଟରେ ମିଶେଇ ଗୋଟାଏ ଘୋଟପାଟ ଡାଲମା କଲେ କ୍ଷତି କଣ? ସେଥିରେ ତ ସବୁ ରହିଗଲା—ପ୍ରୋଟିନ୍, ଷ୍ଟାର୍ଚ, ମିନାରାଲ୍ସ୍, ଲବଣ ଇତ୍ୟାଦି ସବୁ । କିନ୍ତୁ ଏ ଅଦ୍ଭୁତ ପଦାର୍ଥ-କୁ ଆୟତ୍ତ କରିବା ବହୁ ପୂର୍ବଜନ୍ମ ସୁକୃତ ର ଫଳ । ନ ହେଲେ ହୁଏତ

ପଣସ ମଞ୍ଜିତକ ତଳେ ଲାଗି ପୋଡ଼ି ଯାଇପାରେ । ତାକୁ ବଂଚେଇବାକୁ ଅହରହ ଚଟୁ ଚଳେଇଲେ ଯେଉଁ ଗୁଡ଼ାକ ପିଟିଯାଇ ହାଂଡିକ ଯାକ ଚିଅଣକୁ ଗୋଟାଏ ଝଡାନାଳ ପରି ହେଗାଳିଆ ପେଣପେଣିଆ ଝଟାଳ କରି ଦେଇ ପାରେ । ଚଟୁ ଟେକି ଦେଲେ ଉଠିଆସେ ମୂଆଁ ପାଗପୂର୍ବରୁ ଯତେ ବା ଗୋଟାଏ ଦୋହରା ଗୁଡ଼ୁଅଠା ! ହଠାତ୍ ଚୁଲ୍ଲେଇ ଦେବାକୁ ଥାନଝଡେ ହାତରେ ପଡ଼େ ନାହିଁ । ଉଠି ଆଣିବାକୁ ଅଟା ମନା କରେ । ନ ଗଲେ ଚିଅଣ ଯାକ ଗଲା । ଅଗତ୍ୟା ଗୋଟାଏ ଟାଳ ବା ପ୍ଲାଷ୍ଟିକ୍ ମଗ୍‌କୁ ହାତ ବଢାଇ ଆଣି ପାଖରେ ନ ଥୋଇଲେ ମଧ୍ୟ ସମସ୍ୟାର ସମାଧାନ ନାହିଁ । ଟାଳରେ ଚିଅଣ ଚୁଲ୍ଲେଇବା ଅସୁନ୍ଦର ବୋଲି ସମସ୍ୟା ହୁଏ ନାହିଁ, କାରଣ ଏ ବିଷୟରେ ଫଟେ ପୁରୁଣା ଅଧ୍ୟାପକୁ ଖାଲି ଆଖି ବୁଜି ଦେଲେ କଥା ଚଳିଯିବ । ସମସ୍ୟା ହୁଏ ଅନ୍ୟ ପ୍ରକାର । ଟାଳ ଚକିରେ ପାନ ପୁଅ କିଛି ବାଲି ଏବଂ କଣ୍ଟାଁମଡ଼ି ପୂରେଇ ଖେଳିଛନ୍ତି । ମଗ୍‌ରେ ଚାଂକ ଉପର ଭାଇ କ୍ଷୀର ଶୀତଳେଇ କିଛି ଚକିରେ ଛାଡ଼ି ଦେଇଥିବାରୁ ତା ଉପରେ ଝଡାଏ ଛୁ'ଟା ମାଛି କାତ ମେଲେଇ ଭାସୁଛନ୍ତି । ଧର ଯଦି ଏତିକି ବେଳେ ଟାଳରେ ବାଲି ପକେଇଥିବା ପୁଅ କୁଅମୂଳେ ପଡ଼ିଥିବା ଆଳିରେ ହୁରି ଘାଂଟୁଚି ବୋଲି ବଡ଼ଝିଅ ଚିତ୍କାର କରେ, ଯଦି ପିଣ୍ଡାରେ ଶୋଡ଼ା ହୋଇଥିବା ମାଛକୁ ଡେଙ୍କିଟି ଟେକି କୁଆ ସବୁଠୁ ବଡ଼ଟି ବାଛି ଭିଡ଼ିନିଏ, ଯଦି ପେନ୍‌ସିଲ୍ ବା କଂପାସ୍ ବାକ୍‌ସ ପାଇଁ ଏତିକି ବେଳେ ପୁଅ ଝିଅ ଭିତରେ କଳିତକରାଳ ଝପା ଝପା ହୋଇ ଅଭିଯୋଗ ଆସି ପଡେଇ ହୁଏ ଏବଂ ସର୍ବୋପରି ସ୍ୱାମୀଦେବ ଏ ପାଟିଟାରୁ ଶୁଣି ଗର୍ଜନ କରନ୍ତି, 'ଓହୋ ଏ ଘରେ ଆଉ ରହି ହେବ ନାହିଁ । ଅଶିକ୍ଷିତ ବଣୁଆ ଘରପରି ସବୁବେଳେ ଗୋଟାଏ ଘୋ ଘା'! ଛାଡ଼ ମୋତେ ବେଳ ହୋଇଗଲା । ମୁଁ କାମକୁ ବାହାରିଲି ; ତେବେ ହେବ କଣ? ମତେ ତ ଲାଗୁଚି ଏଭଳି ତୁମେ ଦଶଭୁଜା ହୋଇ ନୃମୁଣ୍ଡମାଳିନୀ ବେଶରେ ମୋ ଉପରେ ଚଢିଯିବା ଉଚିତ ହେବ । ପରେ ହୋସ୍ ହେଲେ ବସ କିଛି ପାଦସେବା କରି ସେତକ ପରିଶୋଧ କରନ୍ତ ।

ନା ତା'ନ ହୋଇ ତୁମେ ବୋଧହୁଏ କେବଳ ଦଶଭୁଜା ହିଁ ହୋଇଯାଅ ; ନ ହେଲେ ଏ ସମସ୍ତ ଏକ ସମୟରେ ସଭାଳିବା ତ ସେ ସରୁ ସରୁ ରୋଗିଣା ଦିଟି ହାତରେ କେବେ ସଭବ ହଣାଯାଉ ନାହିଁ । କେବଳ ସେ ସଭାଳ ତା'ନୁହେ । ପିଲାଏ ଗାଧୁଆ ସାରି ଚାଂକ ଇସ୍ତ୍ରୀକରା ଜାମା ପିନ୍ଧନ୍ତି, ସମସ୍ତଙ୍କ ଛୋଟ ବଡ଼ ଥାଳିରେ କାହାରି କାହାସାଂଗେ ନ ମିଶି, ଚିଅଣ ଅଳ୍ପ ବହୁତ

ନ ହୋଇ ସେମାନେ ଭାତ ଖାଇ ସ୍କୁଲକୁ ଯାଆନ୍ତି । ଲର୍ଷପତି ତାଙ୍କ ଫଟୋ ବାନ୍ଧିଥିବା ଅବସ୍ଥାରେ ତୁମକୁ ମୁଁ ବହୁବାର ଦେଖି ନମସ୍କାର କରିନାହିଁ । କପାଳର ଝାଳ ଉପରେ ନିଜର ଅଳରାବାଳ ଲାଖି ଥିଲାବେଳେ, ଆଖି ତଳେ ଟୋପା ଟୋପା ଝାଳ ଜମିଥିଲା ବେଳେ ଚାରୋଟି ପିଲାଙ୍କୁ ଜଣ ଜଣ କରି ପାଉଡର ଲଗେଇ ବସ୍ତାନୀ ସଳଖି ଦେଇ ଦାନ୍ତଫିତା ପର୍ଯ୍ୟନ୍ତ ବନେଇ ଦେଲା ବେଳେ ମୁଁ ତୁମକୁ ସାଷ୍ଟାଂଗ ପ୍ରଣିପାତ କରି ପାରିନାହିଁ ।

ସ୍ନା ପରେ ମୁଁ ଖାଇବି ବୋଲି ଭଲ ଘିଅରେ ଭଜା ଟିକିଏ ହବ । ବଡ଼ ଥାଳି ଚକ୍ ଚକ୍ ହୋଇ ମଜା ହେବ, ଠାଆ ପାଖରେ ମଳି ଝଳି ରହିବ ନାହିଁ । ଥାଳି ଚାରିପଟେ ମଦେଇ ହୋଇ ଛ'ଟା ତିଅଣ ବଢ଼ାହେବ । ପଂଖା ହାତରେ ଧରି ମାଛି ଉଡ଼େଇ ଦିଆ ହେବ ।' ଆଂଚେଇ ସାରି ଠିଆ ହେଉ ହେଉ ହାତକୁ ଟାଓ୍ଵେଲ ବଢ଼େଇ ଦିଆଯିବ । ଚୌକି ପାଖରେ ପାଲିସ୍ ହୋଇ ଜୋତା, ଧୁଆ ହୋଇ ମୋଜା, ଇସ୍ତ୍ରୀ ପେଂଟ, ଜାମା, ଟାଇ ସବୁ ଥୁଆହେବ ନା, ନା ଏଗୁଡ଼ା ମଣିଷ କରି ପାରେ ନାହିଁ!...ମୁଁ ବିଶ୍ଵାସ କରିବାକୁ ମୋଟେ ପ୍ରସ୍ତୁତ ନୁହେଁ ! ତୁମେ ହିଁ ଆଦ୍ୟା ଶକ୍ତି, ତୁମେ ଦଶଭୁଜା, ଦଶ-ପ୍ରହରଣଧାରିଣୀ—କେବଳ କ'ଣ ସେତିକି? ମୋତେ ଭଲଲାଗେ ଭାବି ତୁମେ ନୀଳାମ୍ବରୀ ପିନ୍ଧ; କିନ୍ତୁ ମୁଁ ଜାଣେ ତୁମେ ସେଇ ସାବଜା ସମ୍ବଲପୁରୀ-ଟାକୁ ପିନ୍ଧିବାକୁ ସୁଖ ପାଆନ୍ତ ! ତୁମ ସୁଖ କ'ଣ ତୁମ ମନକୁ କେବେ ହେଲେ ବଳାଏ ନାହିଁ ? ଉପରକୁ ଜୁଡ଼ା ପକେଇଲେ ପରା ତୁମକୁ ଖାଟେ ବୋଲି କେତେଥର କହି ପକେଇଛୁ, କିନ୍ତୁ ସେମିତି କେବେ ପକାଅ କାହିଁ କି? ଚମତ୍କାର ଦିଶୁଛି ବୋଲି ମୁଁ ଥରେ କହି ଦେଇଥିଲି ବୋଲି? ସନ୍ଧ୍ୟାରେ ବୁଲିବାକୁ ମୁଁ ବରାଦ କରେ । ନାକରେ କାନରେ ସତେ କ'ଣ ଖାଇଦେଇ ଦି'ପହର ସାରା ଲାଗିଯାଅ ରାତିପାଇଁ ପୁଣି ସିଝେଇ ସଚଳି ରଖିବାକୁ । ମୁଁ ଫେରିଲା ବେଳକୁ ପ୍ରସ୍ତୁତ ହୋଇଥାଅ, ଉପର ଜୁଡ଼ା ପକେଇ, ଆଉ ନୀଳାମ୍ବରୀ ପିନ୍ଧି ପ୍ରସ୍ତୁତ ଥାଅ ମୋ ଟାଇପିନ୍ ଫିଟେଇ ବାକୁ, ମୋ ହାତକୁ ଗରମ କଫି ବଢ଼େଇ ଦେବାକୁ ।।

ତୁମର ଏ ଅଦ୍ଭୁତ ରୂପ ମୁଁ ପାଖରେ ଥାଇ ଦେଖି ପାରି ନ ଥିଲି, ବୁଝିପାରି ନ ଥିଲି ।

ଆଲୁଣା କହିଲ ଭଲା, ମୁଁ କଣ ତୁମକୁ ଦିଶେ ଗୋଟିଏ ଅଝଟ, ଅବୁଝା ଶିଶୁ ପରି ? ଯାହାକୁ ତୁମେ ସେଇ ଦ୍ୱାପର ଯୁଗର ସର ଲହୁଣୀ ଖୁଆଇ ଆସିଛ, ପୁଣି, ଚାରି ପାଇଁ ନୀଳାମ୍ବରୀ ମଧ୍ୟ ପିନ୍ଧା ଆସିଛ? ଇତି ।

: 2 :

ସମସ୍ତଙ୍କୁ ଲୁଚେଇ ଏ ଚିଠି ଲେଖିଲା ବେଳେ କେମିତି ଟିକିଏ ଲାଜ ମାଡ଼ୁଛି । ମନେ ପକେଇଲେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଗତ ପନ୍ଦର ବର୍ଷ ଭିତରେ ମୁଁ ଏଇ ପ୍ରଥମ ଚିଠି ଲେଖୁଚି ତୁମକୁ । ଗତ ପନ୍ଦର ବର୍ଷ ଧରି ଆମେ ଏକାଠି ରହି ଆସିଚେ ।

ତୁମେ କ୍ରେନି ସଲାଦିନ ମନ ଭିତରେ କଷ୍ଟ ହେଉଥିଲେ ମଧ୍ୟ ଖୁବ୍ ମହୁଁ ଜୋରରେ କହିଥିଲି ଯେ ଆମର ଏଇଠି କିଛି ଅସୁବିଧା ହେବ ନାହିଁ । ଘରେ ନୌକର ପିଲାଟିଏ ରଖିଲେ ଆଉ ଭାବିବାର ନାହିଁ । ସତ କହୁଚି ମୋର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ବାହାର କାମ ମୁଁ ବେଶ୍ ଚଳେଇ ନେଇ ପାରିବି । ଖୁବ୍ ଫୁର୍ତ୍ତି କାମ, ଖୁବ୍ ବେପରୁଆ କାମ, ଘେରାଏ ବୁଲି ଆସିଲେ ବାହାର ଆଲୁଅ ପବନରେ ସତେଜ ଲାଗିବ । କାମ ମନକୁ ମନ ମଧ୍ୟ ହୋଇଯିବ । ଘରଟାରେ ହାଣ୍ଡିକି ମହୁଁ ହେଇ ବଂଚିବାରୁ ମଣିଷ ତ୍ରାହି ପାଇବ । କିନ୍ତୁ ଯେଉଁଦିନ ବୁଝିଲି ଯେ ଲୁଣ ପାଇଁ ଗୋଟାଏ ବଜାର, ଜନା ପାଇଁ ଆଉ ଗୋଟିଏ ବଜାର, ଜୋତା ପାଇଁ ପୁଣି ଗୋଟାଏ ବଜାର ଏବଂ ବଜାରରୁ ବଜାରକୁ ଅତି କମ୍‌ରେ ମାଇଲିଏ, ମୁଁ ହଠାତ୍ କ୍ଲାନ୍ତ ବୋଧ କଲି । ସକାଳୁ ଚାଲିକା ଝୋଲା ଧରେଇ ଦେଲେ ଯଦି ଆଠଟା ପୂର୍ବରୁ ସବୁ ସହଂତ ନ ପାରୁଥିଲା ପିଲାଏ ଭୋକେ ଯିବେ ବୋଲି ମୁଁ ବହୁବାର ବିରକ୍ତ ହେବାର ମନେ ପଡ଼ୁଛି । ଲାଜ ମାଡ଼ୁଛି କିଛି ନ ବୁଝି ସବୁଟାଏ ସର ସର ହେବାପାଇଁ ତୁମେ ଅନେକ ଥର ମୋତେ ବିରକ୍ତ ହୋଇଚ । ମୁଁ କେବଳ ଅଭିମାନ କରିଚି, ମନେ ମନେ ଖୁବ୍ ରାଗିଚି, ଭାବିଚି ଯେ ଏ ଅଂଡିରେ ଯାହା କରିବେ ସବୁ ସୁନ୍ଦର । ଘରୁ ବାହାରି ସ୍ତ୍ରୀ ଘରେ ଚା ଘରେ ବସି ମହାଗପ କରିବା, ଘରକଥା ଭୁଲି ମଜଲିସ୍ କରିବା ସ୍ତ୍ରୀଙ୍କ କାମ । ସବୁ ଦୋଷ ଫାଲି ଆମେ ହିଁ ଘର ଜଗି ବସିଥିବୁ । ଶେଷରେ କଣ ନା ସବୁ ଦୋଷ ଯାକ ମଧ୍ୟ ଆମ ମୁଣ୍ଡରେ ଅଜଡ଼ା ହେବ, ଇତ୍ୟାଦି । କାଲି ଦେଖିଲି ତୁମ ଅଫିସ । ଓଃ ସେଇଟା ଆମ ଘରଠୁ ସତେ ଏତେ ଦୂର? ବାଟଯାକ ଏମିତି ଉଠାଣି? ଏମିତି ପବନମୁହାଁ ଚାଇଁ ଚାଇଁଆ ଚଇତି ଖରାରେ ତୁମକୁ ସାଇକେଲ୍

ନେଇ ଗଲାବେଳେ ଭାରି କଷ୍ଟ ହେଉଥିବ ତ । ରିକ୍ସାବାଲାର ମୁଣ୍ଡରୁ ଝାଳ ନିଗିଡ଼ି ତା ଧୂଳିଆ ଗୋଇଠି ବାଟେ ଟପ୍ ଟପ୍ ତଳେ ପଡ଼ିବାର ମୁଁ ଦେଖିଲି । ମୋ ପାଖ ଦେଇ ଜଣେ ନଇଁପଡ଼ି ସାଇକେଲ୍‌ରେ ଡିହ୍ ମାରି ଗଲାବେଳେ ଘଣ୍ଟାଟାକୁ ଚାହିଁଦେଲା । ମୁଁ ମଧ୍ୟ ଅଜାଣତରେ ଘଣ୍ଟାଟାକୁ ଅନାଇ ଦେଲି । ସାଢ଼େ ଦଶଟାକୁ ତିନି ମିନିଟ୍, କାହିଁ କେତେ ବାଟ ଯିବାକୁ ହେବ । ଅନେଇଲି ରିକ୍ସାବାଲାର ଝାଳର ଧାରକୁ, ସାଇକେଲ୍‌ଚଢ଼ାଳିର ଝୁଙ୍କି ହୋଇ ପବନ ସାଥିରେ ଉଠାଣି ସାଥିରେ ଲଢ଼େଇକୁ । ଶୁଣିଲି ଗୋଟାଏ କଟ୍ କଟ୍ ଶବ୍ଦ, ମତେ ବୋଧ ହେଲା ସେ ଲୋକଟିର ଅଣ୍ଟା ସେମିତି ଡାକୁଚି— ମନେ ପଡ଼ିଲା ! ମୁହଁ ଫେରେଇ ଅନେଇଲି ମଡିରାମ ଗୁଲାବ୍ ଚାଂଦ୍ ଦୋକାନ । ସେଇଠି କଣ୍ଟ୍ରୋଲ୍ ଚିନି ମିଳେ । ବୋଧହୁଏ ସେଥିପାଇଁ ଏତେ ବଡ଼ ଧାଡ଼ି । ସବା ଶେଷରେ ଲୋକଟି ପଛୁଆଡ଼ୁ ଭାରି ଆପଣାର ମନେହେଲା, ତା ହାତରେ ସେ ଝୋଲା, ତା ଆଖିରେ ସେ ଅସୀମ ଧୈର୍ଯ୍ୟ । ମଝିରେ ମଝିରେ ଖରାରେ ସିଝିଗଲେ ଗୋଟିଏ ନିଃଶ୍ୱାସ, ଏ ଗୋଡ଼ରୁ ସେ ଗୋଡ଼କୁ ଓଜନ ବଦଳ କରି ଠିଆ ରହିବାର ଢଙ୍ଗୀ—ସବୁ ଭାରି କରୁଣ ବୋଧ ହେଲା ! ଆମର କଣ ଚିନି ନ ହେଲେ ଚଳନ୍ତା ନାହିଁ ? ତାର ସେ ଖାଉଁଳା ମୁହଁ ଓ ପହଁରିଲା ପହଁରିଲା ପରି ଆଖିରେ ମୁଁ ଦେଖିଲି ସତେ ସେ କୋଉ ଯୁଗରୁ ଏମିତି ଏ ଧାଡ଼ିରେ ଠିଆ ରହିଚି ଏବଂ କାହିଁ କେତେ ଦିନ ପର୍ଯ୍ୟନ୍ତ ସେମିତି ଠିଆ ହୋଇ ରହିଥିବ । ରିକ୍ସା ଚାଲିଗଲା, ମୁଁ ଭେନିଟିବେଗ୍‌ରୁ ଚେକ୍ ବହି ବିନା କାରଣରେ କାଢ଼ି ପୁଣି ରଖି ଦେଲି । ଖୁବ୍ ଘଂଟି ଲାଗିଲା ।

ବ୍ୟାଂକ୍! ଓଃ, ଯଦଉବ ଭିଡ଼! ଏତେ ଲୋକଙ୍କର ଏତେ ଟଙ୍କା ଦୈନିକ ଦିଆନିଆ ହୁଏ ବୋଲି ସେ ଦିନ ମୋର ପ୍ରଥମ ଧାରଣା ହେଲା ! ଖଣ୍ଡିଏ ଚେକ୍ ଭଙ୍ଗେଇବାକୁ ପାଂଚଥର ପାଂଚଟା ଧାଡ଼ିରେ ଦିନଯାକ ଠିଆ ରହିବାକୁ ପଡ଼େ? ଏବେ ବୁଝୁଛି, ତୁମେ କାହିଁକି ମାସଯାକ ପାଇଁ ଏକାଠି ଟଙ୍କା ନେଇ ଆସିବାକୁ କହୁଥାଅ । ସପ୍ତାହକୁ ଥରେ ଆଣିବା ପାଇଁ ମୁଁ ଜିଦ୍ କରି ଆସିଛି—ତୁମ ସାଂଗ ଜଣକ ଖୁବ୍ ସାହାଯ୍ୟ କରି ମୋତେ ସେଦିନ ଟଙ୍କାଟା ଦୁଇଘଣ୍ଟା ଭିତରେ କରେଇଦେଲେ । ମୁଁ ଖଣ୍ଡେ ଚୌକିରେ ବସି ଅପେକ୍ଷା କରିଥାଏ- ସ୍ତ୍ରୀଲୋକ ଦେଖିଲେ କେହି କେହି ଆଡ଼େଇ ହେଇଯାଉଥାଂତି, ଆଉ କେହି କେହି ବେପରୁଆ ଘଷି ହେଇ ଚାଲି ଯାଉଥାଂତି । ହାଉ ଯାଉ ସେ ଗହଳିରେ ମାଇପୀ ଲୋକଙ୍କର ସ୍ଥାନ ନାହିଁ!—ଏ କାମ ଆମ ପାଇଁ ମୋଟେ ନୁହେଁ-

ହୋଇପାରେ ସେ ବ୍ୟାଙ୍କ ଗୁଡ଼ିକ ଆଉ ଟିକିଏ ସମ୍ମାନଜନକ ବାତାବରଣ ରଖିବା ଉଚିତ । ସେଇଠୁ ଫେରିଲାବେଳକୁ ପ୍ରାୟ ଦଶଟା—ହଁ, ମୁଁ ସେଇଠି ବସି ଅପେକ୍ଷା କରୁଥିବା ଅବକାଶରେ ଝିଅଟିଏ ମୋତେ ଦେଖି ଆସି ପରିଚୟ ପଚାରିଲା । ସେ ଗତ ତିନିମାସ ହେଲା ସେଇଠି କାମ କରେ । ତା ଘର ବରହମପୁର । ତେଲେଙ୍ଗା ଝିଅଟିଏ । ଭଙ୍ଗା ଭଙ୍ଗା ଓଡ଼ିଆ କହେ । କହୁଥିଲା ଯେ ପାଂଚମିନିଟ୍ ବିଳମ୍ବ ହୋଇଗଲେ କୁଆଡ଼େ ଉପସ୍ଥାନ ଖାତାରେ ଢୁକି ପଡ଼ିଯାଏ । ତାପରେ କୈଫିୟତ ଲିଖିତ ଆକାରରେ ମଗାଯାଏ । ତା ପୂର୍ବଦିନ ସେ ବିଚାରୀ ଟିକିଏ ବିଳମ୍ବ କରିଦେଇଥିଲା ବୋଲି, ତା ଉପର ହାକିମ ଖୁବ୍ ତଡ଼ବଡ଼ କରିଥାଏ । ଗୋଟାଏ କଣ ଉପରୁ ଲେଖା ଆସିଥାଏ ବୋଲି ବିଚାରୀ ଭାରି ବିବ୍ରତ ଥାଏ । ବୁଝିଲି ସେ ଲୋକଟି ଘଟାକୁ ଦେଖି କାହିଁକି ପ୍ରାଣପଣେ ସାଇକଲ୍ ବୁଲାଇ ଆସୁଥିଲା । ସେଦିନ କାହିଁକି ବଜାର ସଉଦା ଥୋଇ ଦେଇ ତୁମେ ଏକମୁହାଁ ଭୋକରେ ଚାଲିଆସିଲ । ମୁଁ ଚାରିଟା ପର୍ଯ୍ୟନ୍ତ ଉପାସ ରହି ଖୁବ୍ କାନ୍ଦିଛି । କ୍ରୋଧ ଅଭିମାନରେ ଏଇଆଡ଼େ କୁଆଡ଼େ ଖାଇ ପିଇ ମୋତେ ଅଖିଆ ରଖିବାର ଅଭିସନ୍ଧି ରଖିଥିଲ ବୋଲି ମଧ୍ୟ ମୋର ସନ୍ଦେହ ହୋଇଥିଲା ।

ତୁମେ ଫେରିଲାବେଳକୁ ଅନେକ ସମୟରେ କ୍ଳାନ୍ତ ଦେଖାଯାଅ । ମୋତେ ଜଣାପଡ଼େ ଯେମିତି ତୁମେ ଅଯଥା ଗଡ଼ୁଆ ଲାଗିଛ । ଭାରି ଅବୁଝା, ନୀରସ, ଅନ୍-ରୋମାଂଟିକ୍ ଲୋକଟିଏ । ଭାରି ଭୋକଆତୁରିଆ ମଧ୍ୟ । ଏଣୁ ତୁମକୁ ପ୍ରଥମେ ଖାଇବାକୁ ଦେଇ ଅଧାଅଧି ସମୟକୁ ମୁଁ ମୋର ଅନେକ ଅଭିଯୋଗ ପରାମର୍ଶ ଅସୁବିଧାର ତାଲିକା ବାଢ଼ିଦିଏ । ମୋତେ ଲାଗେ ଯେ ଏତିକିବେଳେ, ମୋର ହାତରନ୍ଧା ଖାଦ୍ୟର ସ୍ୱାଦ ପାଇଲାବେଳେ ତୁମେ ମୋର ଆଉ ସବୁ ମଧ୍ୟ ଗ୍ରହଣ କରିବା ମାନସିକ ଅବସ୍ଥାରେ ଥାଅ—ଝିଅର ଜାମା, ପୁଅର ପିନ୍ଧ୍, ସାନ ପିଲାର ଡାକ୍ତର ପରୀକ୍ଷା, ଘରକୁ ଚିଠି । ଗୋଟିଏ ବିଷୟ ଶୁଣିଲେ ଖାଇବା ଭିତରେ ଥରେ ତୁମ ହାତ ଅଟକି ଯାଏ, ପାଟି ଚାଲେ ନାହିଁ, ଆଖିରେ ପତା ପଡ଼େ ନାହିଁ ; ଭୂଇଁକୁ ତୁମେ ଚାହିଁ ରହ । ମୋତେ ସେତେବେଳେ ତୁମେ ବୋକା ଦେଖାଯାଅ । କିନ୍ତୁ ତୁମ ଉପରେ ଯେ ଭାର ଉପରେ ଭାର ବୋଝେଇ ହୋଇଯାଉଥାଏ, ମୁଁ ବା ବୁଝିଥାନ୍ତି କେମିତି । ସେଦିନ ତୁମେ ଆସିଲାବେଳକୁ ଝିଅକୁ ଜର । ମୁଁ ନିଜ ଉପରେ ନିଜେ ବିସ୍ମିତ ହୋଇ ଭାବୁଛି, ମୋତେ କାହିଁକି ଓ କେମିତି ଗୋଟାଏ ପ୍ରକାର ଆନନ୍ଦ ମିଳେ, ଏମିତି ଗୋଟାଏ ଖବର ନେଇ ତୁମ ପାଇଁ ଅପେକ୍ଷା କରିବାକୁ । ବୋଧହୁଏ ଭାବେ

ଏଥର ତ ଆଉ ହେଳା କରି ପାରିବେ ନାହିଁ । ଏଣୁ ଝିଅ ବେହୁ ବ୍ୟସ୍ତ ଅଛି କହିଲା ବେଳକୁ ଅନ୍ତୁ ଯେ ଚୁପ ନ ମାଡ଼ିଛି ତା ନୁହେଁ । ତୁମେ କିଛି ନ କହି ପାଖ ଆରାମ ଚୌକିରେ ବସିଗଲ—ମୁଁ ଭାବିଲି ଖୁବ୍ ଆରାମରେ ବସିଗଲ । ଏବେ ମନେ ପଡ଼ୁଛି ତୁମ କପାଳରେ ଝାଳ ଟିକ୍ ଟିକ୍ ଦିଶୁଥିଲା । ପ୍ରାୟ ଦଶମିନିଟ୍ ପରେ ଗୋଟାଏ ନିଃଶ୍ୱାସ ମାରି ପଚାରିଥିଲ, ଜର କେତେ ଅଛି? ଚାରି ଭିତରେ ହୁଏତ ଅନେକ ଭୟଙ୍କର ଦାୟିତ୍ୱ ପାଇଁ ମନେ ମନେ ପ୍ରସ୍ତୁତ ହେଉଥିଲ । କ୍ଳାନ୍ତ ବୋଧ କରୁଥିଲ । ହୁଏତ ସେଇ ମୁହୂର୍ତ୍ତରେ ପୁଣି ଉଠି ଡାକ୍ତରଙ୍କ ପାଖକୁ ଯିବାକୁ ବାଧ୍ୟ । ପ୍ରାୟ ତିନିମାଇଲ ରାସ୍ତା ! ମାସର ଛବିଶ୍ ତାରିଖ, ତଥାପି ଟଙ୍କା ଯୋଗାଡ଼ କରି ଔଷଧ ଆଣିବାକୁ ବାଧ୍ୟ । ଆଜିକାଲି କେହି ମୁହଁକୁ ଚାହିଁ କଥା କହୁ ନାହାଁନ୍ତି; କାହାରି ପାଖରେ ଟଙ୍କା ନାହିଁ । ସମସ୍ତଙ୍କ କଥା ସମସ୍ତଙ୍କୁ ଅଠାଅଠି ଇତ୍ୟାଦି କଥା ଅନେକ ଥର କହିଛୁ—ମୁଁ ଏବେ ବୁଝୁଛି କାହିଁକି କହିଛୁ ।

ମୁଁ ତୁମକୁ ସବୁ କହେ, କହିବାକୁ ବାଧ୍ୟ ହୁଏ । କହିଦେଲେ ଭଲ ଲାଗେ, ସମୟ ସମୟରେ ବିରକ୍ତ ମଧ୍ୟ ଲାଗେ । ମୋ ଶାଢ଼ୀ ଆଠମାସ ପୁରୁଣା, ମୋର ଅଳଙ୍କାର ବାପଘରୁ ଆଣିବା ଭିତରେ ଥରେ ବି ବଦଳ ହେଇନାହିଁ, ବାହାରକୁ ଯିବା ପାଇଁ ଭଲ ଖଣ୍ଡେ ନିହାତି ଦରକାର । ଏସବୁ କଣ ତୁମକୁ କହିବା ପ୍ରୟୋଜନ ? ତୁମେ ନିଜେ କାହିଁକି ତା ବୁଝିପାର ନାହିଁ ବୋଲି ମୁଁ ଗର ଗର ହେଉଥାଏ । ପୁଅ କହୁଥିଲା ତୁମ ପୁରୁଣା କୋଟ୍ ପିନ୍ଧି ତୁମେ ଅଫିସ୍ ଗଲାବେଳେ ତାକୁ ଲାଜ ମାଡ଼ୁଛି । ତୁମକୁ ମୋ ରାଣ, ହାଇଦ୍ରାବାଦରୁ ନିଶ୍ଚେ ତୁମ ପାଇଁ ଦି ହଳ ସୁଟ୍ ଆଣିବ । ଗୋଟାଏ ପ୍ରେସର କୁକର୍, ଆଉରଙ୍ଗାବାଦି ଶାଢ଼ୀ କଥା ଲେଖିଥିଲ । ଆମର ଏଭଲାଗେ ଖୁବ୍ ଚଳୁଚି—ପରେ ଦେଖିବା, ଆଗ ତୁମପାଇଁ ଆଣ ।

ତୁମକୁ କୌଣସି ପ୍ରକାର କଥାଟାଏ କହିଦେଲେ ମୋ ଦାୟିତ୍ୱ ସରିଯାଏ । ସମସ୍ତେ ଘର ତୋଳିଲେଣି, ଆମର ଖଣ୍ଡେ କଣ୍ଟ ନାଇଁ? ପିଲାଏ ବଡ଼ ହେଲେଣି । ଆମର ନିଜର ବୋଲି ଖଣ୍ଡେ ଭୂଇଁ ନାହିଁ । କଥାଟା କହିଲା ବେଳକୁ ମୁଁ ଭାବୁଥାଏ, ଗୋଲକ ବାବୁଙ୍କ କଥା, ମହେଶ୍ୱରବାବୁ, କୃପାସିନ୍ଧୁ ବାବୁ ! ସୁଧାମୟୀ, ମୋ ସାଂଗ, ଏକାଠି ପଢୁଥିଲା । ମୁଁ ତା'ଠୁ ସବୁଥିରେ ଅଧିକ ନମ୍ବର ରଖୁଥିଲି । ମୋ ସ୍ୱର ଭଲ ବୋଲି ଶେଷରେ ସେ ବାର୍ଷିକ ଉତ୍ସବରେ କଟି ଯାଇଥିଲା । ମୁଁ ଗୀତ ଗାଇଥିଲି । ତାଙ୍କର ଦୋତାଲା କୋଠା

ଏବେ ପ୍ରତିଷ୍ଠା ହେଲା । ଲୋକେ କହୁଛନ୍ତି, ଦେଢ଼ଲକ୍ଷ ଟଙ୍କାର ଘର ।
ତା' ସ୍ୱାମୀ କ'ଣ ଅଫିସର ନା ଜଙ୍ଗଲ ମହକମାରେ କାମ କରୁଛନ୍ତି ।
ଲାଂଚମିଳୁ ତ ମାମୁଲି କଥା, ତୁମେ ଖାଲି ତୁମ ପୋଥିକୁ ଧରି ଚୌକିରେ
ପିଠି ବସିଥାଅ । ତା ପରେ ତୁମ ଠାକୁରଙ୍କୁ ଯେଉଁଭଳି ଭାଷାରେ ଖୁବ୍
ବକିଯିବା ମୋର ପ୍ରାୟ ଅଭ୍ୟାସ । ମୁଁ ଜାଣେ ଯେ ତୁମକୁ ଶୋଧିବା ଅପେକ୍ଷା
ତୁମ ଠାକୁରଙ୍କୁ ଶୋଧିବା ସୁବିଧା, ଏବଂ ତାର ପ୍ରଭାବ ମଧ୍ୟ ବେଶ୍ କଡ଼ା-!
ତୁମେ ପ୍ରାୟ କିଛି କହୁନାହିଁ । ତୁମକୁ ଖୁବ୍ ବାଧେ ନା? ଆମର ଏବେ
ବିନେ ବିନା ଲୁଣରେ ତରକାରୀ ଖାଇଲୁ । ଗୋଟାଏ ଦିନ ରାତିରେ ଷ୍ଟୋଭପାଇଁ
କିରାସିନି ନ ଥିବାରୁ ଦେଉଳଭୋଗ ଖାଇ ଶୋଇଲୁ । ଭାରି ଅସହାୟ ବୋଧ
ହେଉଚି । ଦାଂତକୁ ବାହାରି ପଡ଼ିଲେ ଏତେ ବଡ଼ ସଂସାର, ଏମିତି ଅପରିଚିତ
ଏତେ ଫାଇଦା ଉଠାଇବାକୁ ଚାହିଁ ବସିଛନ୍ତି, ତିଳେ ଛାଡ଼ିବ ନାହିଁ ! ଗୋଟାଏ
ଶୁଖିଲା ବାଲିଆ ଭୂଇଁ ବିଦାରି ପାଣି କାଢ଼ିବା ଯାହା, ଏ କୃପଣ ସଂସାରରୁ
ଅନ୍ନବସ୍ତ୍ର ଯୋଗାଡ଼ କରିବା ତାହା ! ସମସ୍ତେ ସ୍ୱାର୍ଥପର—କେବଳ ନିଜ ଚିନ୍ତା,
ନିଜ ପେଟଚିନ୍ତା, ପିଠି ଚିନ୍ତା—ଘରେ, ବାହାରେ, ସବୁଠି ।

ତୁମେ ମତେ ଖୋଲି ଅନେକ ଥର କହିଛ ଯେ ତୁମକୁ ଭାରି ଏକୁଟିଆ ଲାଗୁଛି,
ଦୁର୍ବଳ ଲାଗୁଛି, ଅସହାୟ ଲାଗୁଛି । ସେଇଟା ଏତେ ସତ ଯେ, ତୁମେ ତାହା
ଆଉ ଥରେ କହିଲେ ମୁଁ ସହି ପାରିବି ନାହିଁ । ମୁଁ ମରିଗଲେ ତୁମେ
ସେମିତି କହୁଥାଅ । ଘରେ ପୁଅ ବୋହୂ, ପଡ଼ିଶା ଗାଁରେ ଝିଅ ଜୁଆଁଇ
ସମସ୍ତେ ତୁମର ପାଦପୂଜା କରନ୍ତୁ । ମୁଁ କିନ୍ତୁ ଚଂଚଳ ଢଙ୍ଗମିତି ଚାଲି ଯାଏଁ ।
ଏଇଟା କେମିତି ମୋର ଗୋଟାଏ ଚିନ୍ତାର ଅଭ୍ୟାସରେ ପଡ଼ିଗଲାଣି । ମୁଁ
ଏମିତି କାହିଁକି ଡର ଡର ହେଉଛି ମୁଁ ନିଜେ ଜାଣେ ନାହିଁ । ତୁମେ
ମୋତେ ସୁଖରେ ରଖିଛ । ବାପଘରେ ମଧ୍ୟ ସୁଖରେ ଥିଲି । ତଥାପି ଦୁଃଖର
ତାଲିକାଟା ହିଁ ସବୁବେଳେ ଆଖିଆଗରେ ଝୁଲି ରହୁଛି । ଘରେ ତୁମ ପିଲାଙ୍କ
ହ୍ୱାଙ୍କାରେ ପଡ଼ି ପଡ଼ି ଥାଏ । ତୁମେ ଆସିଲେ, ଝୁଟା ଉଲୁଗୁଣା ଦେଇ ତୁମ
ଉପରେ ସବୁଯାକ ରାଗ, କୋହ, ଗ୍ଲାନି ଅଜାଡ଼ିଦିଏ । ଅନେକଙ୍କ ଘରେ ଏଇ
କାରଣରୁ ବୋଧହୁଏ କଳି ଲାଗେ । ବାବିବୋଉ କହୁଥିଲେ, କଳି ନ ଲାଗିଲେ
କୁଆଡ଼େ ଦାଂପତ୍ୟର ମିଠା ଅନୁଭବ କରିହୁଏ ନାହିଁ । ତୁମକୁ ରାଗିବାର
ଥରେ ମୁଁ ଦେଖିନାହିଁ । କେବେ ପଦେ ହୁଡ଼ି ଦେଇ କହିନାହଁ ।
ତୁମେ ଅନ୍ୟମାନଙ୍କ ପରି ମରଦପଣରେ ଶୋଧି ପାରନ୍ତ, ଦି ଚାପୁଡ଼ା ମାରିଦେଇ

ପାର୍ଥ ! ବର୍ଷ ମୋର ସବୁ ଅଳି ସହି ଆସିଛୁ । ମୋର ଅଜସ୍ର ମାନ ଗୁମାନର ଗୁମୁ ଗୁମୁ ବର୍ଷିତ ମେଘକୁ ଆକାଶ ପରି ଆବୋରି ରଖିଛୁ । ମୁଁ ତୁମରି ପାଇଁ ତୁମ ଉପରେ ଆଉଜି ରହି ପାହାଡ଼ ବୁକୁରେ ନଦୀଧାର ଘା' କାଟିଗଲା ପରି ତୁମକୁ ଆଘାତ କରିଛି କେବଳ । ତୁମେ ଟିକିଏ ଢୁଚି-ଯିବାରୁ ମୁଁ ମୋର ଅସହାୟତା ଅନୁଭବ କରୁଛି । ସତ କହୁଛି ଆଉ ଅଳଙ୍କାର ପାଇଁ ମୋର ଲୋଭ ନାହିଁ, ଇଚ୍ଛା ନାହିଁ ଘର ତୋଳି ନୀଡ଼ ବାନ୍ଧିବାକୁ । ସାଧାରଣ ସଂସାରଟି ଚଳେଇବା କେତେ ବଡ଼ ବୋଝ ସତେ!!

ହଁ, ଭଲ ଦେଖି ତୁମର ହଳେ ଯୋତା ସେ ଆଡ଼ୁ ଆଣିଥିବ । ସୁଟ୍ ଅବଶ୍ୟ ଆଣିବ । ଏଠି ଆମ ସମସ୍ତଙ୍କର ସ୍ୱାସ୍ଥ୍ୟ ସବୁ ଅଛି । ତୁମ ଆସିବାଦିନକୁ ଚାହିଁ ରହିଲି । ଇତି ।



## କବିପତ୍ନୀ

ଗୋଟିଏ ଡେଂଫରେ ଦୁଇଟି ଫୁଲ ଫୁଟିଲା ପରି ଯୌବନ ମୁକୁଳି ଆସିଲା-ବେଳକୁ ଜୀବନର ଖୁବ୍ ଗହୀରରୁ ଗଜେଇ ଆସନ୍ତି କବିତା ଓ ପ୍ରେମ । ସେ ଦୁହେଁ ଯାଆଁଳା । ଗୋଟିକୁ ଛୁଇଁଲେ ଆରଟି ଝରଝର କାନ୍ଦିପକାଏ । ଗୋଟିଏ ଦୋହଲିଲେ ଆରଟି ସରୁ ତୋଳି ଗୀତ ଗାଏ । ଦୁହେଁ ହାତ ଧରାଧରି ହୋଇ ସେମିତି ମତାଣିଆ ବେଳ ପଡ଼ିଲେ ଉଲୁସିଉଠନ୍ତି । କବିତାଟି ପଢ଼ିଲେ ଭୂଇଁଚଳ ଚେରଗୁଡ଼ିକ ଚହଲିଯାଆନ୍ତି । ଆଖି ଜକେଇଯାଏ । କବିତା-ଟିକୁ କୁଣ୍ଢେଇ କୋଳ ଦେବାକୁ ଇଚ୍ଛା ହୁଏ । ଏଣୁ ଯଦି ସେମିତି ବୀଣାତାର ଭଳି ଟିପ ବାଜିଲେ କମ୍ପି ଉଠୁଥିବା ତରୁଣୀ ସେଭଳି କବିତାଟିଏ ପଢ଼ନ୍ତି, ତେବେ ସେହି କବିଙ୍କର ପତ୍ନୀ ହେବା ପାଇଁ ସେ ଉତଳା ହୋଇ ଉଠିବା କିଛି ଅସ୍ୱାଭାବିକ ନୁହେଁ । ସବୁବେଳେ କ'ଣ ଦାନ୍ତ, ଆଖି, ଚମ ଦେଖି ପ୍ରେମ କରାଯାଏ? କବିତା ଭିତରେ ଯେଉଁ ଆତ୍ମାଟି ଫୁଟୁଥାଏ ଏବଂ ସେଥିପାଇଁ କବିତାର ପାଖୁଡ଼ାଗୁଡ଼ିକ ଲହରୀ ତୋଳୁଥାନ୍ତି, ତାକୁ ପ୍ରେମ କରିବା ବ୍ୟବସାୟୀ ଦୃଷ୍ଟିରୁ ହୁଏତ ଅସତର୍କତା; କିନ୍ତୁ ସତର୍କ ରହି ତ ପ୍ରେମ କରାଯାଏ ନାହିଁ, ବରଂ ବଣିଜ କରାଯାଏ । ଚାରିଆଡ଼ୁ ବାଡ଼ି ସଜେଇ ଛନ୍ଦି ବାନ୍ଧି ଗୋଟାଏ ପ୍ରକାର ପ୍ରେମ ବେଉସା ଆମେ କରିଥାଉ । ଏଣୁ ବୋଧହୁଏ ସାଧାରଣ ଜୀବନରେ ଅନୁଭବ କଲାଭଳି ପ୍ରେମ ଆସେ ନାହିଁ । ସବୁ ବାଡ଼ି ହୁଗାଳି ଦେଇ, ଖୋଲା, ବେପରୁଆ, ଚାରିକାତ ମେଲେଇ ସ୍ରୋତରେ ନିଜକୁ ଭସେଇ ଦେଲା ଭଳି ପ୍ରେମ ଆମେ କରି ପାରୁନା; ସେମିତି ସାହସ ଆମର ନାହିଁ, ସେତିକି ଉଦାରତା ନାହିଁ, ବିଶ୍ୱାସ ମଧ୍ୟ ନାହିଁ ।

ପ୍ରାୟ ଏହିଭଳି ଯୁକ୍ତିରେ ବିଶ୍ୱାସ କରୁଥିବା ତରୁଣୀ କବିତା ପଢ଼ି ଦେଇ କବିଙ୍କର ପତ୍ନୀ ହୋଇଯା'ନ୍ତି । ନାନ୍ଦୀ, ସପ୍ତପଦୀ ଏବଂ ପୁରୋହିତାଦିଙ୍କର କୋଳାହଳ ପରେ ସେ ପ୍ରଥମେ ଯେତେବେଳେ କବିଙ୍କୁ ମୁହଁ ଟେକି ଚାହାଁନ୍ତି, ଗୋଟାଏ

ନିଆଁ ହୁଳା ଚାଳରୁ ଚଳିପା ଯାଏ ଖସିଯାଏ । ଆଖି ନଇଁ ଆସେ, ବୁକୁରେ ପବନ ଫୁଲିଉଠେ । ନିଶୁଆ ଝୁରୁଝୁରିଆ ମଣିଷଟିଏ, ଭିତରକୁ ଓହରି ଯାଇଥିବା ଗାଲ ଯୋଡ଼ିକ, ଭୋବିଲା ଆଖି ଯୋଡ଼ିକ ବହୁ ରାତିରେ ଉନ୍ନିଦ୍ର ରହୁଥିବା ଦୁଇଟି କ୍ଳାନ୍ତ ପ୍ରହରୀ । ସେଇ ସୁକୁମାର ଦେବଶିଶୁଟି କେବେ କାହିଁ, ଯାହାର ମୁକ୍ତାଫଳ ପରି ଆଖିଧାରରେ ଅଫଷ୍ୟ ସ୍ୱପ୍ନ? —କବିତାର ଝର୍କା ବାଟେ ଯାହାର ରୂପ ଦେଖି ସେ ବିମୁଗ୍ଧ ହୋଇଥିଲେ? ବୁକୁରେ ଫୁଲିଉଠୁଥିବା ପବନକୁ ଆଉ ରୋକି ହୁଏ ନାହିଁ । ବୈଶାଖୀ ଝାଡ଼ି ଖୁବ୍ ଲମ୍ବା ସୁରଟିଏ ପରି ବୋହିଯାଏ ।

ପ୍ରସ୍ତୁ ପ୍ରସ୍ତୁ ହୋଇ ତା'ପରେ କିଚୁ ଖୋଳପା ବାନ୍ଧିଆସେ । ଆଖିରେ ଆତ୍ମୀୟ-ତାର ଅଞ୍ଜନ ମାଡ଼ିଯାଏ । ଏଇ ସ୍ତ୍ରୀ ଧାରେ ଲେଖା ଲଗେଇ ଅନେଇଲେ ସବୁ ବିଶେ ସୁନ୍ଦର । କବି ବେଳେବେଳେ ଝାପ୍ସା ଦୀପ ଆଲୁଅରେ ସେଇ ଦେବଶିଶୁ ପରି ଦିଶିଯାଆନ୍ତି । ଆଖି, ଗାଲ, ଚେହେରାକୁ ଏଉଳି ଏକ ରଙ୍ଗ ମଡ଼େଇ ଦେଲେ ମନ୍ଦ ବିଶେ ନାହିଁ । ବେଶ୍ କିଛି କିଛି ପ୍ରେମ କରି ବସନ୍ତି କବିପତ୍ନୀ । ଦି'ଚାରିଟା କ'ଣ କବିତା ମଧ୍ୟ ବିଭୋର ହୋଇ ଶୁଣନ୍ତି । କିନ୍ତୁ ବେଶି ଦିନ ନୁହେଁ, ଯଦି କେବଳ କବିତା ଚୋବେଇଲେ ପେଟ ପୂରି ଯାଉଥାନ୍ତା, ତେବେ କବିପତ୍ନୀଙ୍କୁ କିଛି ଅସୁବିଧା ନ ଥିଲା । ଅନ୍ନବସ୍ତ୍ର କଷ୍ଟ ଯେତେବେଳେ ବେଶି ବାଧେ ଓ ସେ ଆସି ଝାଡ଼ି ଦେଇ ଯାଆନ୍ତି, ଅଭିଯୋଗରେ ଦବି ଯାଉଥିବା ଗଳାରେ !କବି କେବଳ ହସିଦିଅନ୍ତି । ସତେ ବା ଡାଲି ତେନ୍ତୁଳି ଓ ହୁଣ୍ଡତିବ ସବୁ ଅବାନ୍ତର, ଅସମୀଚୀନ, ଅଶ୍ଳୀଳ ଶବ୍ଦଗୁଡ଼ିଏ ।

ସଂସାର ଚଳେଇବାକୁ କବିଙ୍କର ଯୋଗ୍ୟତା ମୋଟେ ନ ଥାଏ । ସଂସାର କିନ୍ତୁ ଅନିର୍ବାର୍ଯ୍ୟ ଭାବରେ ତାଙ୍କୁ ଚାରିଆଡ଼ୁ ଘେରିଆସେ । କବିପତ୍ନୀ ନିଜେ ଘେରି ଆସନ୍ତି । ତାଙ୍କ ବାହୁ ବେଷ୍ଟ୍ନୀ ଭିତରେ ଥିବା କବିଟିକୁ ସେ କିଆରିରେ ଟିକି ଟିକି କରି ବୁଣିଦେବା ପୂର୍ବରୁ ମୁହୂର୍ତ୍ତେ ଦ୍ୱନ୍ଦ୍ୱରେ ପଡ଼ିଯାଆନ୍ତି । ଡାଲି, ତେନ୍ତୁଳି ଓ ହୁଣ ଡ଼ିବର ଫସଲ ବାସ୍ତବିକ ଭାରି ଲୋଭନୀୟ । କିନ୍ତୁ କବିଟିକୁ ନିଃଶେଷ କରି ଅଜାଡ଼ିଦେବାକୁ ତାଙ୍କ ହାତ ଯାଏ ନାହିଁ ।

ଯେଉଁମାନେ କିନ୍ତୁ ଅଜାଡ଼ି ଦିଅନ୍ତି, ତାଙ୍କ ସଂଖ୍ୟା ଶହେରେ ଅନେଶତ । ସେଇ ରାମା, ଶ୍ୟାମା, ଦାମା ମା'ଗୁଡ଼ିକ କବିତା ନ ପଢ଼ି କବିଟିକୁ ଅକସ୍ମାତ ପତି ରୂପେ ପାଇଥାନ୍ତି । ସେମାନେ ବାରି ପାରନ୍ତି ନାହିଁ ଯେ, ଯାହାକୁ

ସେମାନେ ନିଜ ପାଇଁ ଏବଂ ତାଂକ ସ୍ନେହର ରାମା, ଶାମା, ବାମା ପାଇଁ ଖର୍ଚ୍ଚ କରିଦିଅନ୍ତି, ସେ ବିଚାରା ସେଥିକୁ ପାରିବାର ନୁହେଁ । ସଂସାରର ଝାଂଜି ଓ ପତ୍ନୀଙ୍କ ଝିଂଗାସରେ ଯେତେବେଳେ ଦୀପ ଲିଭିଆସେ, ତ୍ରୁଟିତ ପରିବାର ବୋବାଳି ଛାଡ଼ି ଡାକୁଥିଲା ବେଳେ ଯୋଡ଼ିଏ ଅପଲକ ଆଖି ଶୂନ୍ୟକୁ ଅନେଇ ରହିଯାଏ । ଯୋଡ଼ିଏ ନୀରବ କବିତା ବର୍ଣ୍ଣମାଳାର ସ୍ୱର ଏବଂ ଛନ୍ଦ ଭିତରକୁ ଆସି ନ ପାରି ବାହୁଡ଼ିଯାଆଂତି । ଦରିଦ୍ର ପୃଥିବୀ ଦରିଦ୍ର ରହିଯାଏ । ରାମା, ଶାମା, ବାମା ଓ ସେମାନଙ୍କ ମା'ମାନେ ଝାଡିଝୁଡ଼ି ହୋଇ ବିଲମାଳକୁ ଫସଲ ଉଠାଣି ପରେ ଧାନ ଶିଂଷା ଗୋଟାଂତି । କିନ୍ତୁ ଶହେରେ ଯେଉଁ ଜଣକ ଏ ପର୍ଯ୍ୟାୟରେ ପଡ଼ଂତି ନାହିଁ ସେଇ ମହିୟସୀ କବିପତ୍ନୀଙ୍କର କଥା ଏଠି ପଡ଼ିଛି ଏବଂ ସେ ତାଂକର କବିଟିକୁ ସେମିତି ବିସର୍ଜ୍ଜ ଦେଇ ପାରନ୍ତି ନାହିଁ ।

ଫଳରେ ସରକାରୀ ସ୍କୁଲରେ ଦଶଟାରୁ ଚାରିଟା ସେ ପିଲାଂକୁ ପଢ଼ାଂତି, ଆସିଲା-ବେଳକୁ ଯୋଡ଼ିଏ ସେଓ ଆଣିଥାଂତି । ସାଧାରଣ ଲୋକ କ'ଣ ଟିକିଏ ସାଧାରଣ ଚିଂତା କରେ ବୋଲି ମସ୍ତିଷ୍କର ଅଦଖ୍ୟ ତଂତୁ ଛିଂଡିଯାଏ! କବିତା ଲେଖିବା କିଛି ଖେଳ ଘର ନୁହେଁ ଏବଂ ସେଓ ଅଂଗୁର କ୍ଷୀର ଟିକିଏ ନ ହେଲେ କବିଟିର ସୁକୁମାର ଗୋଲାପ ଡାଳରେ କଅଁଳ ପତ୍ର ମେଲିବ ନାହିଁ କି କଢ଼ ଫୁଟିବ ନାହିଁ । ଖାଲି ସେତିକି ନୁହେଁ । କବି ବସିବା ଢଂଗୀ ଉପରେ ପ୍ରେରଣାର ଧାରା ନିର୍ଭର କରେ । ଗୋଟାଏ ଆଠ ଅଂକି କାଠ ଚୌକିରେ ଝୁଂପରି ବସି ସେମିତି ଟାଣୁଆ ଲୋକ ହୋଇଥିଲେ ପ୍ରବନ୍ଧ ଲେଖିପାରେ; କିନ୍ତୁ କବିତାର ସରୁ ଧାର ସେଇ ଅଟାଂଭାଂଗ ପାଖରେ ଲାଖିଯିବ, ଆଉ ଉପରକୁ ଆସିବା ସହଜ ନୁହେଁ । ଏଣୁ ଆରାମ ଚୌକିଟିଏ ନିହାତି ଲୋଡ଼ା । କ୍ରମଶଃ ବକ୍ର ଅଂସରେଖାରେ ସହଜରେ କବିତା ବଲ୍ଲରୀ ମାଡ଼ି ଆସିପାରେ । ପୃଥିବୀର ମେରୁଦଂଡ ପରି କବିଙ୍କ ମେରୁଦଂଡ ମଧ୍ୟ ଭୂମି ସହିତ ସାଢ଼େ ତେଇଶ ଡିଗ୍ରୀ ଅଂକନ କରିବା ହେଲା ସବୁଠାରୁ ଶ୍ରେଷ୍ଠ ଅବସ୍ଥା ।

କବି ସୌଂଦର୍ଯ୍ୟର ଉପାସକ । ଏଣୁ ବହୁ ଶ୍ରମ ସ୍ୱୀକାର କରି ଫୁଲଗଛ ଲଗାହୁଏ ରଂଗୀନ ପର୍ଦ୍ଦା ଝୁଲେ ଏବଂ କବିପତ୍ନୀ ଅନେକ ଯତ୍ନରେ ନିଜର ପ୍ରସାଧନ କରନ୍ତି । ସୂର୍ଯ୍ୟକୁ ନିଜର ପ୍ରତିଦ୍ୱଂଦ୍ୱୀ ବୋଲି କବି ସ୍ୱୀକାର କରୁ ନଥିବାରୁ ସେ ଉଠିବା ପୂର୍ବରୁ ସକାଳର ବେଶ୍ ଦୁରୁସ୍ତି ସମସ୍ତ ମିଳିଯାଏ ସଜଡ଼ାସଜଡ଼ି ହେବାକୁ ।

ରୂପ, ରସ, ଗନ୍ଧ, ସ୍ପର୍ଶର ଜଗତକୁ ଆନନ୍ଦମୟ ସୌନ୍ଦର୍ଯ୍ୟମୟ କରି କବି ଦେଖିବାକୁ ଚାହେଁ । ଏଣୁ କବିପତ୍ନୀ ଲୁଚି ଲୁଚି କିଛି ସଙ୍ଗୀତ ଶିକ୍ଷା କରିବାର ମଧ୍ୟ ଦେଖାଯାଏ । ଚନ୍ଦ୍ର ପକ୍ଷରେ ସେତାର ବାଜେ । ନିରୋଳା ସନ୍ଧ୍ୟାରେ ମଧୁର ସଙ୍ଗୀତ ଶୁଭେ । କବିଙ୍କୁ ବିଭୋର କରିବାକୁ ପଡ଼ିବ । ଆତ୍ମହରା ନହେଲେ କବିତା ସମ୍ଭବ ନୁହେଁ ।

ଏ ସବୁ ସତ୍ତ୍ୱେ କବି କେବଳ ଚିନ୍ତନ୍ତି । ସେ ଚାହାନ୍ତି କବିତାରୂପିଣୀ ପତ୍ନୀକୁ ନିଜଠାରୁ ଅଭିନ୍ନ ରଖିବାକୁ । କବିପତ୍ନୀ ନିଜକୁ କୃତାର୍ଥ ମଣନ୍ତି; କିନ୍ତୁ ଚିନ୍ତାମଣି ପରି ସମସ୍ତ ଛାଣି ଉପଦେଶ ଦେଇ କହନ୍ତି ଯେ, ଛାର ନାରୀ ଉପରେ ସେ ଯେତେ ମୁଗ୍ଧ ବିଭୋର ରହୁଛନ୍ତି, ଯଦି ଶାଶ୍ୱତୀ କବିତା ଉପରେ ସେତିକି ରହି ପାରନ୍ତେ କ'ଣ ନ ହୁଅନ୍ତା? କବିପତ୍ନୀ ନିଜେ ଏହା ପରେ ଅସଂଖ୍ୟ ସମ୍ଭାବନାର ସ୍ୱପ୍ନରେ ବୁଡ଼ି ଯାଆନ୍ତି । କବି କିନ୍ତୁ କେବଳ ରୋଦନ କରନ୍ତି । ତାଙ୍କ ବାନି ଧରି ଅଦ୍ଭୁତ, ଅବସ୍ଥା ହୋଇ ତାଙ୍କୁ ଭିଡ଼ିଧରନ୍ତି! ଓ! ତା'ହେଲେ କବିଙ୍କୁ ଅକୃପଣ ପ୍ରେମ ହିଁ ପ୍ରୟୋଜନ! ପ୍ରେମ ହିଁ ସୃଷ୍ଟିକୁ ଆନନ୍ଦମୟ ସୌନ୍ଦର୍ଯ୍ୟମୟ କରିଦିଏ । ପ୍ରେମ ଏବଂ କବିତା ଯାଆଁଳା! ଗୋଟିକୁ ଛୁଇଁଲେ ଆରଟି ଝର ଝର କାନ୍ଦିପକାଏ ।

ଏଣୁ ପ୍ରେମ ହୁଏତ ଆସେ; କିନ୍ତୁ କବିତା ଆସିପାରେ ନାହିଁ । ସବିତା ଆସେ, ସଙ୍ଗୀତା ଆସେ, ଚନ୍ନୁ, ମନ୍ନୁ ଆସନ୍ତି । ନିରୋଳାରେ ମୃତବଧୂ ପରି ବସିଥିବା କବିତା ଏ ସହୁଳି ଭିତରେ ପଶିପାରେ ନାହିଁ । ଦାନ୍ତ ଦୁଆରେ ତଟସ୍ଥ ଠିଆ ରହି ଲୁହ ଗଡ଼ାଏ । କବି ଲୁହ ଗଡ଼ାନ୍ତି କିନ୍ତୁ ତଟସ୍ଥ ଠିଆ ନ ରହି ବାହାରିପଡ଼ନ୍ତି କବିତାକୁ ଖୋଜିବା ପାଇଁ । କବିପତ୍ନୀ ମଧ୍ୟ କବିତାକୁ ଖୋଜି ବାହାରିଥିଲେ । ଚାହିଁଥିଲେ ଯେ, ସେ ଆସିଲେ ବହୁ ଯଶ କୀର୍ତ୍ତି ଆସି ଅଜାଡ଼ିହେବ ଏବଂ ଇତିହାସ ଲଗାତ୍ କହିବ ଯେ ତାଙ୍କ ଭଳି ସହଧର୍ମିଣୀ ନ ଥିଲେ 'ମହାକବି ଅମକୁ (ନାଁ ଧରିବା ଭାରତୀୟ ପରମ୍ପରା ନୁହେଁ ।) ଆଦୌ ସମ୍ଭବ ହୋଇପାରି ନ ଥାନ୍ତେ । ଫଟୋ ଉଠିବ, ଲେଖା ବାହାରିବ, କେହି କ'ଣ ତାଙ୍କୁ ବାଦ୍ ଦେଇ ପାରିବେ ?

କବିତା ଖୋଜି ଖୋଜି ସେ କିନ୍ତୁ ପାଆନ୍ତି ଫୁଲାଏ ଗଙ୍ଗାଳିଆ ଅଦ୍ଭୁତ ଅବସ୍ଥା ପିଲା । ତାଙ୍କ ବାପକୁ ମିଶେଇ ସେ ହୁଅନ୍ତି ପାଞ୍ଚ । ଅଧାରରୁ ବୋଇଲା ଚଳି ଲଗେଇଲା ବେଳେ ସେ ଭାବନ୍ତି ଯେ, ତାଙ୍କ ଜନ୍ମ ବୃଥା ହୋଇଗଲା ।

ନିଜେ ବରଂ ଆଉ ଦି'ଅକ୍ଷର ପଢ଼ି ଯାଇଥିଲେ କ'ଣ ବା ହୋଇଥାନ୍ତା । ସ୍ୱେ କବି ! କବିତା ବି କ'ଣ ସବୁ ଲେଖନ୍ତି । ଚମତ୍କାର ଦି'ତିନିଖଣ୍ଡ ସେବେ ଲେଖିଥିଲେ । କିନ୍ତୁ ସବୁ ମିଶେଇ ଦେଲେ ମଧ୍ୟ ସେମିତି ଯୁଗସୃଷ୍ଟି କଲାଭଳି କ'ଣ ଲେଖି ପାରୁଛନ୍ତି?...ପିଲା କାନ୍ଦେ, ଟାଉଳ ପଡ଼ିଯାଏ, ସବିତାଙ୍କୁ ଡର ହୁଏ । ଆଚ୍ଛା, ଏ କବିତା ଲେଖିବେ ବୋଲି କ'ଣ ମାଇକିନା-ଟିଏ ଏସବୁ ସମ୍ଭାଳିବା ଉଚିତ୍? କାହିଁ, ସେ ଅମୁକ ରାଉତ ବା ସମୁକ ମହାପାତ୍ର କ'ଣ କବି ନହୁଁନ୍ତି? ସେ ତ' ସେର୍ ଘର କଥା ସମ୍ଭାଳିଛନ୍ତି । ହେଲା ବା ସ୍ୱେ'ଆମର ଖୁବ୍ ନିପାରିଲା । ଛୋଟିଆ, ଉଣ୍ଡାପିଆ ଧନ୍ଦାଟିଏ କ'ଣ କଲେ ଦି'ପଇସା ଘରକୁ ଆସନ୍ତା ନାହିଁ? କୋଉଲା ଚଳି କହୁନ୍ତେ । ଢେର ଧୂଆଁ ବାହାରି ଘର ଭରି ହୋଇଯାଏ ।

ଝଗଡ଼ା ନ ଲାଗିଲେ କୁଆଡ଼େ ଦାମ୍ପତ୍ୟ ଅପୂର୍ଣ୍ଣ ରହିଗଲା । ଗୋଟାଏ ମନୁଆ କବି ଘରେ ଥିଲେ, ଝଗଡ଼ା ପାଇଁ ପ୍ରୟାସ କରିବାକୁ ପଡ଼େ ନାହିଁ । କାରଣ? —କାରଣ ଯାହା ଇଚ୍ଛା ତାହା ହୋଇପାରେ । ମାନ, ଅଭିମାନ, କନ୍ଦାକଟା ଭିତରେ ତେରଦିନ ବିତିଯାଏ । କବି ଗୁମାନରେ କଥା କହନ୍ତି ନାହିଁ । ଦାଢ଼ି କାଟନ୍ତି ନାହିଁ । କବିପତ୍ନୀ ପିଲାଙ୍କୁ ନେଇ ବାପଘର ଚାଲିଯାଆନ୍ତି । ମୂଳ ମଡ଼ି କିନ୍ତୁ ଖୁବ୍ ଗଭୀରରେ ଲୁଚିଥାଏ । କବିତା ଖୋଜିବା ଆଳରେ କବି ଯାଇ ପଶନ୍ତି ଅମୁକଙ୍କ ଘରେ କାରଣ ତାଙ୍କ ପତ୍ନୀ ସୁରସିକା, ତାଙ୍କ ରୁଚି ଚମତ୍କାର, ସେ ଦିଶନ୍ତି ତା'ଠୁ ଆହୁରି ଚମତ୍କାର । ପଶନ୍ତି ସମୁକଙ୍କ ଘରେ କାରଣ ସେଇଠି ଯେଉଁ କବା ଝିଅଟି ରହେ ସେ ଲେଖାରେ କବିଙ୍କ ଶାଳୀ ହୋଇପାରେ ! ଫେରନ୍ତି ରାତିରେ ଖୁବ୍ ବିଳମ୍ବରେ । କବି ଏହିପରି କାହାକୁ ପ୍ରକୃତରେ ଖୋଜନ୍ତି କହିବା କଠିନ । ବୋଧହୁଏ କବିତାକୁ ହିଁ ଖୋଜନ୍ତି ଏବଂ ଘରେ ଆସି ଚୋର ଧରା ହୁଏ । କବି ଚିତ୍କାର କରନ୍ତି, ତା'ଠୁ ଆହୁରି ଚିତ୍କାର କରନ୍ତି କବିପତ୍ନୀ । ପିଲାଏ ଚିହିଁକି-ଚିହିଁକି ବୋବାଳି ଛାଡ଼ନ୍ତି । ହେଇଯାଏ ଗୋଟାଏ ବେଶ୍ ଭୋକ ଉପାସ, ପାଟିତୁଣ୍ଡ, ରାଗ ରୋଷର ପର୍ବ ।

ଅଧରାତିରେ କିଛିଦିନ କବିତା ଲେଖାହୁଏ, କବି ଗୁମାସ୍ତା ଚାକିରି କରନ୍ତି । କବିପତ୍ନୀ ଧୈର୍ଯ୍ୟରଖି ମନସ୍ତତ୍ତ୍ୱ ପଢ଼ନ୍ତି । କବି ଏକ ମନସ୍ତାତ୍ତ୍ୱିକ ପ୍ରାଣୀ, କବିତା ଏକ ମନସ୍ତାତ୍ତ୍ୱିକ ଘଟଣା । କବି ଆଣି ପଢ଼ନ୍ତି ସାର୍ତ୍ରେ, କିର୍କେଗାର୍ଡ଼! ସୁଅ ଅନେକ ଗଭୀରରେ ପାଣି କାଟେ । ପିଲାଏ ପାଠ ପଢ଼ନ୍ତି, ସ୍କୁଲକୁ ଯାଆନ୍ତି ।

ନିରୋଳାରେ ଦିନେ ଖୁବ୍ ସଂଯତ ପାକଳ ଦୁଇଟି ପ୍ରାଣୀ ପରସ୍ପରକୁ ଅନେକ ସମୟ ଅନେଇ ରହୁଁଚି । ପୁଣି ଥରେ ପ୍ରେମର ସଂଚାର ହୁଏ । ଅବଶ୍ୟ ନିଶୁଆ ଝୁରୁଝୁରିଆ ମଣିଷଟି ଯ୍ୱା'ଭିଚରେ ଆଉରି ଝୁରୁଝୁରିଆ ହୋଇ ଯାଇଥାଏ ଏବଂ ବୀଣାତାର ପରି କବିପତ୍ନୀ ଦାୟିତ୍ୱରେ କଳାକାଠ ପଡ଼ି ଯାଇଥିଲେ ସୁଦ୍ଧା ଆଉରି ଟାଇଁ ଟାଇଁଆ ହୋଇ ଯାଉଥାଂତି ।

ଇତସ୍ତତଃ ପଡ଼ିଥିବା କବିତାଗୁଡ଼ିକୁ ଗୋଟେଇ ଏକାଠି କରାଯାଏ । ସଂକଳନ ଛପା ହେବ । ରାଜଦରବାରରେ ଚିରକାଳ କବି ଉପହାର ପାଇ ଆସିଛନ୍ତି । ଏବେ ମଧ୍ୟ ସେଇଭଳି ବେଶ ପରିପାଟୀ ହୋଇ ସେ କବିତା ଗୁଚ୍ଛଟିକୁ ନେଇ ଦରବାରକୁ ଯାଆଂତି । ଏଣେ ଘରେ ଆଶା, ଉତ୍କଂଠା, ଉଦ୍‌ବେଗ ଘର ଉଛୁଳେଇ ଦୁଆର ବଂଧରେ ଲହଡ଼ି ଭାଂଗୁଥାଏ । ଏଇଥର ବହୁ ଢଂତାର ନିଶ୍ଚୟ ଟେକି ଆଣିବେ । କବି କିଂତୁ ଫେରଂତି ଆଖି ପର୍ଯ୍ୟଂତ ସ୍ୱପ୍ନରେ ବୋଝେଇ ହୋଇ । ପରମ ଉତ୍ସାହରେ ଗୋଟିଏ ଢେତୁମାଳ ପତ୍ନୀଙ୍କ ବେକରେ ପକେଇ ଦେଇ ବିଭୋର ହୋଇ ଠିଆ ରହଂତି—'ରାଜକଂଠେର ମାଳା'—କବିପତ୍ନୀ ସଂଦର୍ପଣରେ ଛୁଇଁ ଦେଖଂତି ଯେ ସେ ଗଡ଼ାକ ସୁନା ନୁହେଁ..କିଂତୁ ତଥାପି କବିଙ୍କର ମନ ଭାଂଗିଯିବା ଭୟରେ ଉତ୍ସବ ମନାଯାଏ । ପିଲାଏ ମିଠା ଖାଇ ଡିଅଁଂତି ।

'ତା' ହେଲେ ହେଲା ନାହିଁ', ଭାବଂତି କବିପତ୍ନୀ । —ଢେଉଫୁଲ ମାଳଟି ଆସ୍ତେ ଝରିଯାଏ । କବିଙ୍କର ବୟସ ବଢ଼େ, ଦାଢ଼ି ବଢ଼େ, ଝିଅ ବଡ଼ ହୁଏ, ଶାଶୁ ଘରକୁ ଯାଏ । ଗୋଟାଏ ବିରାଟ ଝଡ଼ ପାରି ହୋଇଗଲା ପରେ ଶିଷ୍ଟ ନଇଁଯାଏ । ଉଭୟେ ବୋହୂଲି ଯାଆଂତି । ଉଭୟଙ୍କ ଉପରେ ଗୋଟାଏ ବ୍ୟସନୀ ସଂସାର ଆସୁରୀ ସଂଭୋଗ କରି ଚାଲିଯାଏ । ଝିଅ ଯାଏ, ଆର ଝିଅ ମଧ୍ୟ ଯାଏ । ପୁଅ ଦୁହେଁ ଯାଆଂତି, କିଏ ପଢ଼ିବା ପାଇଁ, କିଏ ଚାକିରି ପାଇଁ । ପୁଣି ଏକ ନିରୋଳା ମୁହୂର୍ତ୍ତରେ ଦୁଇଟି ପ୍ରାଣୀ ପରସ୍ପରକୁ ଅନାଂତି..। ପୁଣି କାହିଁ କେଉଁ ଗହୀରରୁ ପ୍ରେମ ଝରି ଆସେ । ଝୁରୁଝୁରିଆ ମଣିଷଟି ଶିରାବହୁଳ, ଦୁର୍ବଳ ବୀଣାତାର ପରି କବିପତ୍ନୀ, ଶୀର୍ଣ୍ଣା, ରୁଗ୍ଣା—ଘରେ ଅନେକ ନିର୍ଜନତା ।

ଏଇ କାଳିଆ ଅଝଟ ପିଲାଟି ବଇଁଶୀ ବଜାଏ । ଚୂଳପାଟି ବାନ୍ଧେ ମୟୂର ଚନ୍ଦ୍ରିକା ଝଡ଼ିହୁଏ । ତାକୁ କାଖରେ ବସେଇ ଲହୁଣୀ ଖୁଆଇବାକୁ ହେବ ।

ସେ ବହି ହାତରେ ଧରି ବସିଲେ ଆଉ କିଛି କଥା ମନେ ନାହିଁ । ପୁଣି ସେଠି କିଛି ପାଇବା ମଧ୍ୟ ଛାଡ଼ିଛି ।

ସେ ବହି ହାତେ ଭାଂଗିଲେ ତାଙ୍କୁ ଦଂଡିବା ମନା । ପୁଣି ସେଓ କିଣା ହୁଏ, ଅଗରୁ ଆସେ । ସେ ଗାଧୋଇଲାବେଳେ କବି ନଈଁପଡ଼ି ଗଂଧାଘରେ ବହି ପିଇ ଦିଅଂତି, କରେଇରୁ ଉଡା ଟେକି ନେଇ ଖାଇଦିଅଂତି । ଅନ୍ୟମନସ୍କ ହୋଇ କଥା କହୁଂତି ନାହିଁ, କହିଲେ ବୁଝୁଂତି ନାହିଁ । ପୁଣି ହଠାତ୍ ବେକରେ ଓହଳି-ପଡ଼ି ଗୁଡ଼ାଏ ଗେଲ କରି ପକାଂତି । ପଦା ପାନ ପୁଅଟି ଏମିତି ଅଝଟ ହେବ ବୋଲି କବିପତ୍ନୀ କେବେ ଭାବି ନ ଥିଲେ !!

କବିତାର ମୁଟବଧୂ ବି ଦୁଆର ବଂଧ ଡେଇଁ ଘର ଭିତରକୁ ପଶିଆସେ । ...ଯ୍ୱା' ଭିତରେ ଦିନେ କିଂତୁ ପ୍ରକାଂଡ ମେଘ ନଈଁ ଆସେ । କବି ବାଉଳା ହୋଇ ବାଟ ପାଆଂତିନାହିଁ । ଯ୍ୱା'କୁ ପାରି ହୋଇଗଲେ ଆରପଟେ କବିତାର ରାଜ୍ୟ । ତାଂକୁ ସେତାରର ପରୁ ବାଜଣା ପୁଣି ଶୁଭିଯାଏ । ସେ ବର୍ଷକର ପୁରୁଣା 'ଫଟୋ'ଟିକୁ ଅନାଂତି । ଏ କାଚ ଭିତରୁ ସେ ଆପି ତାଂକୁ ଆଉ ଡାକିବ ନାହିଁ । ଦୁଇଟି ଝିଅ ବେଳେବେଳେ ଶାଶୁ ଘରୁ ଆସଂତି କିଂତୁ ଏ ଆଉ ଆସିବନାହିଁ । —ରେଖାଏ ଧୂଆଁ ତାଂକ ଆଖିର ପିତୁଳା ଉପରେ ଉପରକୁ ଉଠିଯାଏ । ପ୍ରକାଂଡ ମେଘ ଝରଝର ଝରିଯାଏ ଝରିଯାଏ! ଆକାଶ, ଧରିତ୍ରୀ, ପବନ, ପାଣି ଓ ସୂର୍ଯ୍ୟ । ଫଟୋ ଭିତରୁ କବିପତ୍ନୀ ଆହୁରି ଉଜ୍ଜ୍ୱଳ ଦେଖାଯାଂତି । ...ଝରଝରେ ଝରିଯାଏ ପାଠକର ଲହୁଧାର । ସେ ଲହୁ ଭିତରୁ ଅନାଏ; ଅନେକ ଶତାବ୍ଦୀ ପରେ ଅନାଏ! 'ମଥୁରା ମଂଗଳ'ଟି ଲହୁରେ ଜୁଡୁବୁଡୁ, ଓଦା ପରପର । —କବିତା କୁଆଡ଼େ ମରେନାହିଁ ବୋଲି ପ୍ରବାଦ ଅଛି ପରା !



## ତୃପ୍ୟନ୍ତାମ୍

ଋଜୁ ପାଲୁବାଲୁ ଯୋଡ଼ ଦେଖେଇ ଯେଉଁ ଅଧାଡ଼ିଆ ମଣିଷମାନେ ସବ୍ୟାଭାଗରେ ସୂର୍ଯ୍ୟଙ୍କୁ ପାଣୀ ଋଷି ପାଣି ଅଂଜୁଳା ଟେକିଦିଅନ୍ତି, ସେମାନଙ୍କ ମୂର୍ତିମାନ ଅଂବିନେଇ ଯାଉଥାଏ । ଜୀବନର ଅପରାହ୍ଣରେ ସେମାନେ ମନେପକାଉଥାନ୍ତି ନିଜର ଉଲିଅଳ ଅତୀତକୁ; ଝୁରୁଥାନ୍ତି ପୁରୁଣା ଚିତ୍ରପରି ମଳିନ ହୋଇଆସୁଥିବା ସ୍ମୃତିଆଶ୍ରିତ ନିଜର ପିତୃକୁଳଙ୍କୁ । କହୁଥାନ୍ତି, 'ହେ ମୋର ତୃଷାର୍ତ ପୂର୍ବପୁରୁଷ, ତୃପ୍ତି ଲାଭକର, ପରଲୋକରେ ତୁମର ଚିତାଗ୍ନି ଲିଭିଯାଉ, ତୁମର ଅନନ୍ତ ଶୋଷ ମେଣ୍ଟିଯାଉ । ତୁମେ ସନ୍ତୁଷ୍ଟ ହୋଇ ଫେରିଯାଅ ।' ଅଜସ୍ର ପିତୃପୁରୁଷ ଯେଉଁମାନଙ୍କ ନିଃଶ୍ଵାସ ପବନ ଦିନେ ଏଇ ପବନରେ ମିଶିଥିଲା ଏବଂ ଯ୍ୱାକୁ ଆଲୋଡ଼ିତ କରିଥିଲା, ଅଥଚ ଯେଉଁମାନେ ଅରୂପ ଏବଂ ଅଜ୍ଞେୟ, ସେମାନେ ଧୂସର ଗାଈପଲ ପରି କୌଣସି କହୁଡ଼ିର ଅରଣ୍ୟରେ ପଶିଯାଅନ୍ତି ଫେରିଯାଆନ୍ତି କେଜାଣି କୋଉଠିକି କିନ୍ତୁ ଫେରନ୍ତିନାହିଁ ପାଚିଲାଦାଡ଼ିଆ, ପାକୁଆପାଟିଆ କେତୋଟି ମହାର୍ଘଦିନର ଟାପରାପ୍ରିୟ ବାଙ୍ଗାବନ୍ଧୁ ଗୋସେଇଁବାପାଗଡ଼ୁକ ଏବଂ ସେଇଠି ଗଢ଼ୁଣୁ ଗଢ଼ୁଣୁ ହେଉଥାନ୍ତି କେତେ ରୂପ, କେତେ ଢଙ୍ଗୀ, କେତେ ଘଟଣାରେ ପୁଣି ଥରେ ଜୀଅନ୍ତା କଦଂବ ପରି ଟାଂକୁରି ଉଠିଥିବା ବାପାମାନେ ।

ସ୍ମୃତିକୁ ତର୍ପଣ ଟେକିଦେଲାବେଳେ ସେ ଋଜୁଆ ଅଧାଡ଼ିଆ କାଂଦୁରା ମଣିଷମାନେ ବାରବାର ଛେଉଣ୍ଡ ହେଉଥାନ୍ତି । ବାରବାର ମନେ ପକାଉଥାନ୍ତି କେମିତି ପାଟିରୁ କାଢ଼ି ପୁଅବହୁଣୀ ମା'ମାନେ ଅମୃତ ଭୁଞ୍ଜାଇଦେଉଥିଲେ—ଅଥଚ କେମିତି ସେଇ ବୁଢ଼ୀମାନଙ୍କୁ ପାଇଁ ଶୀତ ରାତିରେ ପିଲା ମୁଟିଥିବା ଓଦା ଲେକଡ଼ା ଫୋପାଡ଼ି ଦେଇ ଏଇ ହାତଗୁଡ଼ିକ ନିଜ ପୁଅଙ୍କୁ କାଶ୍ମୀରୀ କମ୍ବଳ ଘୋଡ଼େଇ ଦେଇଥିଲେ ନିଜର ପତ୍ନୀଙ୍କ ଉପରକୁ ଟାଣି ନେଇଥିଲେ ମହାର୍ଘ ରେଜେଇ । ସେଇ ହାତ ସବୁ ଜଳତିଳ ଦାନକଲାବେଳେ ଛିଡ଼ି ପଡୁନାହାନ୍ତି, ଭିତର ସୋରା ସୋରା ହୋଇ ଲହୁ ଲୁହାଣ ହେଲାବେଳେ ଝଡ଼ିପଡୁନାହାନ୍ତି । ସେମାନେ ଚେଣିକି କହିପାରୁନାହାନ୍ତି 'ହେ ମୋର ପିତୃପୁରୁଷ ତୃପ୍ତ ହୁଅ, ତୁମର ତୃଷା ନିବାରଣ ହେଉ ।' ସେମାନେ ବରଂ କହୁଛନ୍ତି; "କ୍ଷମାକର ହେ ମୋର କ୍ଷମାପ୍ରବଣ, ସ୍ନେହପ୍ରବଣ, କରୁଣାପ୍ରବଣ ପିତୃକୁଳ, ଏ ଅପରାଧୀକୁ କ୍ଷମାକର; କୃତଘ୍ନକୁ କ୍ଷମାକର!! ଜୀବନର ଅପରାହ୍ଣରେ ଆଖି ଉପରୁ ପରଳ ଖସାଇଦେଇ ସେ ଏବେ ଉଭୟ ଦିଗକୁ ଦେଖିପାରୁଛି । ସେ ତୁମଭଳି ପଳିତ ଜୀର୍ଣ୍ଣ ଅସହାୟ ହୋଇପାରୁଛି । ନିଜର ଅକାତର ଅକୁଣ୍ଠିତ ଉତ୍ତରପୁରୁଷଙ୍କୁ ଦେଖିପାରୁଛି ।

ଅତୀତ ଏବଂ ଭବିଷ୍ୟତକୁ ଦୁଇଟି କର୍ଣ୍ଣଫୁଲ ପରି ଏକତ୍ର ମିଶାଇ ପାରୁଛି। ବୁଝିପାରୁଛି ତା'ର ନିପାରିଲାପଣ, ତା'ର ନିଦଂଭିଲାପଣ, ତାର ବିଗତ ଯୌବନ, କୈଶୋର, ଅପୋଗଣ୍ଡ ଏବଂ ଆସନ୍ନ ରୋଗ, ଶୋକ, ଜରା, ପରେ ମୃତ୍ୟୁ। ସେ ତୁମଠାରୁ ଦୂରତମ ବିନ୍ଦୁରେ ଠିଆହୋଇ ଏଣିକି ଓଲଟି ଫେରିଯିବ, ବୃତ୍ତ-ରେଖାଟିକୁ ବୁଝିଦେବ ଯେଉଁଠୁ ଆସିଥିଲା ସେହିଠାରେ। ପିତୃଲୋକର ତୋରଣ ଉନ୍ମୁକ୍ତ ରଖିଥାଅ, ହେ କ୍ଷମାଶୀଳ ପିତୃଲୋକେ! ଅଧାରରୁ ଫେରୁଥିବା ଏ ପୁରୁଷଟିକୁ ଆଲୁଅ ଦେଖାଇ ନେଇଯାଅ। ଅସଂଖ୍ୟ ପୁରୁଷରେ ସେ ବି ମିଶି-ଯାଉ। ସେ ହୋଇଯାଉ ଆଉ ଗୋଟିଏ ହେଉ, ହୋଇ ଯାଉ ସମୁଦ୍ର। ହେ ଅଖଣ୍ଡ ଆଲୋଡ଼ିତ ସମୁଦ୍ର, ଏଇ ଆନନ୍ଦାଏ ତିଳୋଦକରେ ତୃପ୍ତିଲାଭକର! ହେ ମୋର ଅକଳନୀୟ ତୃଷାର୍ତ୍ତ ପୂର୍ବପୁରୁଷମାନେ, ତୃପ୍ୟନ୍ତାମ୍ ତୃପ୍ୟନ୍ତାମ୍!!

ସ୍ୱର୍ଗଠାରୁ ଗରୀୟାନ୍ କିଏ ସେହି ବ୍ୟକ୍ତି ଯାହାର ଅନ୍ତ୍ୟେଷ୍ଟି ସମାପନ କରିସାରିଲା ପରେ ତାକୁ ଆବିଷ୍କାର କରାଯାଏ? କାଚବନ୍ଧେଇ ଫଟୋ ଭିତରୁ ନିଶ୍ଚଳ ଚାହିଁଥିବା ସେ ଆକୃତିଟି କାହାର? କେଉଁ କାଳର, କେଉଁ ଦେଶର ସେ ରୂପ ଏବଂ ନାମ? ରକ୍ତର ସୂଅ ତଳମୁହାଁ ବୋହିଗଲାବେଳେ ପଛକୁ ଫେରିବା ମନା। ପଛରୁ କିନ୍ତୁ ସେ ଆଖି ଯୋଡ଼ିକ ଅନେକକାଳ ପର୍ଯ୍ୟନ୍ତ ଚାହିଁ ରହିଥାନ୍ତି। ଶାନ୍ତି ଉଦକ ଛିଞ୍ଚିଦେଲା ପରେ ବୁଣି ହୋଇ ଯାଇଥିବା ସେ କଙ୍କାଳହାଡ଼ ଗଣ୍ଠିକରେ କିମ୍ବା ପାର୍ଶ୍ୱ ମୁଠାକରେ ଅଗ୍ନି ନ ଥାଏ। ଚିତ୍ରପଟର ସେ ଆଖିଯୋଡ଼ିକରେ ମଧ୍ୟ ପଲକ କିମ୍ବା ଦୃଷ୍ଟି ନ ଥାଏ। କିନ୍ତୁ ନାତି ନାତୁଣୀ-ମାନଙ୍କ ହାତରୁ ବଂଗାଡ଼ିକ ପାଟି ମେଲେଇ ପିଇଗଲାବେଳେ ବଡିଶବନ୍ଧନ ଭିତରେ ଆକାଶ, ପବନ, ପୃଥ୍ୱୀ, ଏକାଠି ଟଳମଳ ହେଉଥିଲେ। ତା' ପୂର୍ବରୁ ରୋଗ ସତ୍ୟ, ଯନ୍ତ୍ରଣା ସତ୍ୟ, ସେ କୋରଡ଼ିଆ ଆଖି ଭିତରେ ଡବଡ଼ବ ଭରିଯାଉଥିବା ଅଶ୍ରୁ ସତ୍ୟ। ସେ ପାକୁଆ ପାଟି ଜୀବନର ସ୍ୱାଦିଷ୍ଟ ନଡ଼ିଆ ଖାଇବାକୁ ଚାହିଁ ନ ଥିଲା। ସାତହାତ ଗାମୁଛାଟିରୁ ଅଧିକ କିଛି ଯୋଗେଇ ହେବାକୁ ସେ ଧଡ଼ୁଧଡ଼ୁ ଟମ ଚାହିଁ ନ ଥିଲା। ସଂସାରର ଗାଦି ଉପରୁ ଓହ୍ଲେଇ ଯାଇ ସେ ସ୍ୱାଗତ ଜଣେଇଥିଲା ଉତ୍ତରପୁରୁଷକୁ—''ଏଇ ମୋର ଏକମାତ୍ର କୁଳଚନ୍ଦ୍ରମା। ତାକୁ ଠାକୁରେ ପରମାୟୁ ଦେଇଥାନ୍ତୁ। ଏକା ଵଂଶ ସାତଙ୍କ ହେଉ। ପୁଅ ମୋର ଧନଧାନ୍ୟ ଭୋଗକରୁ। କଂସା ପିଠା ଖୋଇ ବଢ଼େଇଥିଲି—ଘିଅ ଖାଇ ଦୁଧରେ ଆଚଉ। ମୋ ପୁଅ ହାକିମ ହେଉ, ବଡ଼-ଲୋକ ହେଉ, ମୋ କୁଳ ଉଜ୍ଜ୍ୱଳ ହେଉ।' ଏହା ଏକଦା ସତ୍ୟ ଥିଲା, ଆଜିର ଏ ପାର୍ଶ୍ୱ ପରି, ଏ କଙ୍କାଳହାଡ଼ ପରି।

ଆଉ ମଧ୍ୟ ସତ୍ୟ ଥିଲା ଯେ, ବେକ ଭାଂଗି ଚାହିଁଲେ ଅଧା ଆକାଶରେ ସେ ବୃହତ୍ ବ୍ୟକ୍ତିର ହାଂଡ଼ିପରି ମୁହଁ ଦିଶୁଥିଲା । ସ୍ତମ୍ଭରେ ଖୋସିପଡ଼ୁଥିବା ଦାନ୍ତ ଡରଡର ହସ ଦିଶୁଥିଲା । କଅଁଳ ବାସିଫୁଲ ପରି ନୁଆଁଣିଆ ଆଖି-ଯୋଡ଼ିକ ଦିଶୁଥିଲା । ଦେହ ବାସୁଥିଲା ଚନ୍ଦନପରି । ପାଚିଲା ଗାମୁଛା ବାସୁ-ଥିଲା ବିଅଁସର ପରି । ଅଂଗୁଠିଟି ଧରିଲେ ମୁଠା ପୂରିଯାଉଥିଲା । ଲାଗୁଥିଲା, ଆକାଶର ଚେର ପରି ବଟ ଗଛର ଓହଳଟାକୁ ଧରିଛି । ନିର୍ଭୟ ଲାଗୁଥିଲା ।

...ଆସ୍ତେ ଆସ୍ତେ ସେ କାଂଧ ନଇଁଆସିଲା । ମୁହଁ ସାଂକୁଡ଼ି ଗଲା । ଭାତ ଥାଳିରେ ଆଉ ପାନ ବଡ଼ ରହିଲାନାହିଁ । ସେ ଘରେ ନ ଥିଲେ ବସାବହିର ସରଯାକ ଆଉ ଭାଗ ଭାଗ ହେଲାନାହିଁ । ସେ ଥିବାଯାଏଁ ବଡ଼ ବଡ଼ ଭାଗଟା ସବୁବେଳେ ସେଇଆଡ଼େ ଗଲାପରି ଲାଗିଲା । ଅଧାରରେ ତାଙ୍କୁ ଘୃଣା କରିବାକୁ ଇଚ୍ଛାହେଲା । କାହାକୁ କାହା ସହିତ ତୁଳନା କରିବାକୁ ଇଚ୍ଛାହେଲା । ଦିନେ କିଛୁ ଭୋଜିଭାତ ପରେ ଖୁବ୍ କ୍ଲାଂତ ଉଦ୍‌ବିଗ୍ନ ବାପଟି ତାର ଏକମାତ୍ର ଶୋଇବା ଘରୁ ଆଡ଼େଇ ହୋଇ ଯାଇଥିଲା ନିଶାର୍ଦ୍ଧ ଉତ୍ତୀର୍ଣ୍ଣ ହେବା ପରେ । ସେଇଠି ସୁଅ ଆରମ୍ଭ କଲା ତାର ସଂସାର । ଏ ସମସ୍ତ ସତ୍ୟ । ଆଜିପରି, ଏ ବକ୍ତା ପରି, ଏ ଶ୍ରୋତାପରି ସତ୍ୟ, କୁଶାକୀର୍ଣ୍ଣ ଏ ତିଳୋ-ଦକ ପରି ସତ୍ୟ ।

ତାଙ୍କୁ ବାହାରେ ଖୋଜିଲେ ମାଟିଘଡ଼ିରେ ପୋତା ରହିଥିବା ଦୁଇଖଣ୍ଡି ହାଡ଼, ଭିତରେ ଖୋଜିଲେ ମୁଠା ମୁଠା ସ୍ମୃତି । ଆଉ ପୁରୁଷେ ଘୁଞ୍ଚିଗଲେ କେବଳ କଥା, କିମ୍ବଦନ୍ତୀ, ବଂଶପରମ୍ପରା ଓ କାହାଣୀ । ପୁଣି ଗୋସେଇଁ ବାପା ବାପ ସଙ୍ଗେ ଲଢ଼େଇ କରିଥିଲେ ? ତାଙ୍କ ବାପେ ଗଡ଼ପତିଙ୍କୁ ମୁକାବିଲା କରିଥିଲେ । ତାଙ୍କ ଘର ଘରଣୀ ଚାଖଡ଼େ ଓସାରର ଚକ୍ରନୋଥ ନଡ଼ି ହୋଇ-ଥିଲେ । ତାଙ୍କ ପାହୁଡ଼ୁ ହୁଳକରେ ପାଂଚବିଶା ରୂପା । ଆହୁରି ଅଲୌକିକ କାହାଣୀ । କିଏ ତା'ଭିତରୁ କୁରୁକ୍ଷେତ୍ର ପଡ଼ିଆରେ କଳିଙ୍ଗ ସେନା ଭିତରେ ବକ୍ଷ ଉଭାରି ନିଶ ଠିଆକରି ରହିଥିଲେ । କିଏ ଅଶୋକ ଥାଟ ଭିତରେ ପଶି ଶତ୍ରୁସେନା ମନ୍ଥି ପକାଇଥିଲେ । ସବା ଶେଷ ପାହାଡ଼ ପରେ ହେଇ ଯେଉଁଠୁ ଆଉ କିଛି ଦିଶୁନାହିଁ ସେଇଠି ଅତ୍ରି, ଭରଦ୍ୱାଜ, ଅଙ୍ଗିରାଦି ଋଷିମାନେ ପ୍ରଜା ସୃଷ୍ଟିକରି ବଂଶଧାରା ପ୍ରବାହିତ କରିଛନ୍ତି । ଦିଶୁଛନ୍ତି ହିମାଳୟର ଶୃଙ୍ଗ ପରି, ସୁଦୂର, ଅସ୍ପଷ୍ଟ ଏବଂ ମାନନୀୟ । ସେ ଭିତରୁ ଗୋଟାଏ ଋଷିଙ୍କର ଆଖି ଆକାଶିଆ ନେଳି ରଙ୍ଗର ହୋଇପାରେ । ବାହୁଯୋଡ଼ିକ ସୁଦୀର୍ଘ ହାତୀଶୁଣ୍ଢ ପରି ଲମ୍ବମାନ ହୋଇଥାଇପାରେ । ସିଂହ ବକ୍ଷ ପରି ଶଟାରେ ଯୋଡ଼େଇ

ହୋଇଥାଇପାରେ ତାଙ୍କର ବିଭ୍ରାନ୍ତ ପୌରୁଷ ।...ଏ ଅଜସ୍ର ବଂଶପରମ୍ପରା ଭିତରେ ପ୍ରତ୍ୟେକ ସ୍ରଷ୍ଟା ଆଜି ପରି ସତ୍ୟ—ଏ ବକ୍ତା ପରି, ଏ ଶ୍ରୋତା ପରି, ଏ ତିଳୋଦକ ପରି ସତ୍ୟ ।

ପ୍ରତ୍ୟେକ ପୁରୁଷ ଗୋଟାଏ ଗୋଟାଏ ଜଗତର ଅଧିକାରୀ ଥିଲେ । ସେ ଜଗତର ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ରାଷ୍ଟ୍ର, ରାଜାପ୍ରଜା ; ସେ ଆକାଶର ମେଘ, ସେ ଅରଣ୍ୟର ଫୁଲ ଫଳ ସବୁ ସ୍ୱତନ୍ତ୍ର । ସେ ସମସ୍ତଙ୍କୁ ନେଇ ସ୍ୱୟଂସମ୍ପୂର୍ଣ୍ଣ ଜଗତ୍ । ସେମାନଙ୍କ ଜୀବନର ପ୍ରତି ମୁହୂର୍ତ୍ତକୁ ନେଇ ସ୍ୱତନ୍ତ୍ର ଜଗତ ଏକଦା ଆଜିପରି ସତ୍ୟ ଥିଲା । ମାଟି ପାଣି ପବନରେ ସେମାନେ ଖେଳିଥିଲେ, କବରୀରେ ଚମ୍ପା କଢ଼ି ଖୋସିଥିଲେ, ପ୍ରେମ କରିଥିଲେ, ଯୁଦ୍ଧ କରିଥିଲେ, ହତାହତ ହୋଇଥିଲେ । ବାହ୍ୟର ନଦୀ ଉପରମୁଣ୍ଡରୁ ତଳମୁଣ୍ଡକୁ ବହି ଆସିଥିଲା, ଆଜିପରି, ଯେ କୌଣସି ଦିନ ପରି । ପୁରୁଷ ପୁରୁଷକୁ ଆଶ୍ରିତ ହୋଇ ଥାକ ଥାକ ଜଗତ୍ ଅପସାରିତ ହୋଇଯାଇଛନ୍ତି । ମାନବ ଇତିହାସର ସମପରିମିତ ଓ ଅଧାଡ଼ିଆ ବଂଶ ଇତିହାସ । ତା'ର ଇତିହାସ ହିଁ ମଣିଷ ଜାତିର ଇତିହାସ । ପ୍ରତ୍ୟେକ ଯୁଗରେ ତା'ର ପୂର୍ବପୁରୁଷ ସେ ଇତିହାସକୁ ଧାରଣ କରି, ତାକୁ ପରିପୁଷ୍ଟ କରି ବିଦ୍ୟମାନ ।

ବାପ ମାତ୍ରେ ପୁଅ ଭିତରେ ଆଉ ଥରେ ଜନ୍ମଲାଭ କରେ । ବହୁ ଯତ୍ନରେ ଯୁଗ ଯୁଗର ସଞ୍ଚିତ ପୂର୍ବପୁରୁଷମାନଙ୍କୁ ପୁରୁଷାନ୍ତରିତ କରେ । ଆଖିରେ ଆକାଶ ପ୍ରତିଫଳିତ ହୋଇ ଚାଲିଥାଏ । ବାହୁ ବିଣି ଚାଲିଥାଏ ପ୍ରକାଣ୍ଡ ହାତୀ-ଶୁଣ୍ଢ ପରି, କିନ୍ତୁ ତା'ବି ଭିଜିଯାଏ ବହୁ ସ୍ରୋତର ପାଣି ପ୍ରବାହରେ । ଗେରୁ କୁଣ୍ଡାରୁ ବାହାରିଥିବା ନଦୀରେ ଅଜସ୍ର ଧାର ମିଶି ମିଶି ତାର ଚିହ୍ନଟକୁ ଧୋଇଦିଅନ୍ତି କିନ୍ତୁ ବହୁ କାଳ ପରେ ସ୍ରୋତର ସୁଦୂର ଉତ୍ତରରେ ହଠାତ ଗୋଟାଏ ଗେରୁଆ ଫୋଟକା ଉଠିଆସେ କାହିଁ କେଉଁ ଗହୀର ଭିତରୁ । ସହସ୍ରେ ବର୍ଷର ପୁରୁଣା ଚିହ୍ନଟ ପୁଣି ନିଜକୁ ଜାହିରକରେ । ସହସ୍ର ସହସ୍ର ପୂର୍ବପୁରୁଷ ଓ ଜଳାଞ୍ଜଳି ଦେଉଥିବା ମଣିଷଟି ଭିତରେ ସୂକ୍ଷ୍ମାତିସୂକ୍ଷ୍ମ ରୂପରେ ନିଜକୁ ଜାହିର କରୁଥାନ୍ତି । ସେ ସେମାନଙ୍କୁ ଅଦ୍ଭୁତ ଭାବରେ ଧାରଣକରି ରଖିଥାଏ । ତାଙ୍କଠାରୁ ବିଚ୍ଛିନ୍ନ ଉଦ୍‌ଗୀର୍ଣ୍ଣହୋଇ ଚାଲିଥାଏ । କଟିଚାଲିଥାଏ, ମରିଚାଲିଥାଏ, ଭାସିଚାଲିଥାଏ ଏବଂ ବଢ଼ିଚାଲିଥାଏ । ମୁହୂର୍ତ୍ତ ମୁହୂର୍ତ୍ତର ବୃତ୍ତଗୁଡ଼ିକୁ ନେଇ ବୃତ୍ତରେଖାଟି ବଙ୍କେଇ ଚାଲିଥାଏ ତାର ଆଦିବିନ୍ଦୁ ଆଡ଼କୁ । ପ୍ରତି ମୁହୂର୍ତ୍ତର ବୃତ୍ତଟି ଗୋଟିଏ ଗୋଟିଏ ନିମେଷ ବିଶ୍ୱ । ଏ ମାଳ ମାଳ ବ୍ରହ୍ମାଣ୍ଡକୁ

ଧାରଣକରି ଜଗତସାରା ସୋଟିରହେ ଏ ପୁରୁଷ କିନ୍ତୁ ଆଖି ମଟକା ମାରି ଚାହିଁ ଦେଲାବେଳକୁ ରହୁ ସାଲୁବାଲୁ ଅଧାଡ଼ିଆ ମଣିଷଟି ସ୍ମୃତି ସାଗରରେ ଅପସରିଯାଉଥିବା କୌଣସି ପଦ୍ମକୁ ବାହୁନି ବାହୁନି ମ୍ରିୟମାଣ । ତା'ର ପିତୃପୁରୁଷ ଏବେ ତୃଷାର୍ତ୍ତ । ତାଂକୁ ସେ ତିଳତର୍ପଣ କରୁଛି । କହୁଛି, 'ତୃପ୍ତି ଲାଭକର ହେ ମୋର ପିତୃପୁରୁଷ; ତୁମର ତୃଷା ଶାଂତହେଉ !!'

ଅତି ସାଧାରଣ ଦେଖାଯାଉଥିବା ବଂକା ବାଡ଼ି, ରୂପାବଂଧେଇ ଚାଳିଶା ଚଷମା ଏବଂ ନାସଡ଼ିବା ମହାର୍ଘ ବସ୍ତୁପରି ସଜାହୋଇ ରହିଥାଏ କିଛି ଦିନ । ପାଣି ବୁନ୍ଦା ପରି ଛଳ ଛଳ ଅସଂଖ୍ୟ ସ୍ମୃତି ସେମାନଙ୍କ ଦେହରେ ଜଡ଼ିତ ହୋଇ ରହିଥାଏ । ଫଳତଃ ହଠେ ଆଖିକୁ ଦେଖାଯାଏ ଯେ, ସେମାନେ ଚଳପ୍ରଚଳ ହେଉଛନ୍ତି । ତାଂକ ସହିତ ଅତି ପରିଚିତ ଗୋଟିଏ ଛାୟାମୂର୍ତ୍ତି ସକାଳ ସହରରୁ ଫୁଲ ତୋଳିବାକୁ ଖାଲି ପାଦରେ ନିଃଶବ୍ଦରେ ଚାଲିଯାଉଛନ୍ତି । କାଂଥକୁ ଆଉଜି ଫଟେଇ ମୁଣ୍ଡାରୁ ନାସଦାନି ବାହାରକରି ଲେଡ଼ିକୁ ଝାଡ଼ୁଛନ୍ତି । ପାଖରେ ବସିପଡ଼ି ଗୋଟାଏ ବଗଲା ନାଚି ବୋହିପଡୁଥିବା ଲହୁଣୀ ପରି ସେ ଥଲୁଥଲିଆ ମହୁଁକୁ ଚାହିଁରହିଛି...ଆଉ କାହାକୁ କିନ୍ତୁ ଏ ସବୁ କିଛି ଦିଶୁନାହିଁ । ବଂକାବାଡ଼ି, ନାସଦାନୀ ସବୁ ପୁରୁଣା, ମସିଆ, ବେଦରକାରୀ ବସ୍ତୁ । ସେଗୁଡ଼ାକୁ ଫିଙ୍ଗା ଯାଇପାରେ । ଅଧାଡ଼ିଆ ମଣିଷ ଏକମାତ୍ର ଶୋଇବାଘରୁ, ଗୃହସ୍ଥଳିର କେନ୍ଦ୍ରରୁ ଯେତିକି ଅପସରି ଯାଏ, ସେତିକି ଋଣୀ ହୋଇଯାଏ ତାର ସ୍ମୃତିର ମୂଲ୍ୟ ଏବଂ ସେଇ ସ୍ମୃତିଜଡ଼ିତ ବସ୍ତୁଗୁଡ଼ିକର ମୂଲ୍ୟ । ସେ କିନ୍ତୁ ତର୍ପଣକରେ ପିତୃପୁରୁଷଙ୍କ ପାଇଁ, ସେମାନଙ୍କ ସହିତ ଜଡ଼ିତ ନଦୀ, ପର୍ବତ ବନସ୍ପତିମାନଙ୍କ ପାଇଁ । ଜଳତିଳ ଅର୍ପଣ କରି କହେ, 'ହେ ପର୍ବତମାନେ, ତୃପ୍ତି ଲାଭ କର । ହେ ଔଷଧ ଓ ବନସ୍ପତିମାନେ ତୃପ୍ତି ଲାଭକର । ହେ ସରିତ୍ ଓ ସରିତ୍-ପତିମାନେ ତୃପ୍ତି ଲାଭକରନ୍ତୁ । ମୋର ଷାଠିଏ ହଜାର ପିତୃପୁରୁଷଙ୍କ ତୃପ୍ତି ବିଧାନ ହେଉ ।'

ଅସଂଖ୍ୟ ପିତୃପୁରୁଷଙ୍କୁ ସ୍ମରଣ କରି ସେ ଜଳ, ତିଳ ତର୍ପଣ କରେ । ପ୍ରାଚୀନ-ଯୋଗ୍ୟ ହେବାର ଅସାମର୍ଥ୍ୟ ପାଇଁ ରୋଦନ କରେ । ତଥାପି ପୁରୁଷାନୁକ୍ରମର ମହାପ୍ରବାହରେ ଜଡ଼ିତ ହୁଏ । ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତକୁ ସେ ଗଭୀର ମୁହୂର୍ତ୍ତରେ ଧାରଣକରି ଟଳମଳ ହୁଏ । ଯେତେ ଅଯୋଗ୍ୟ ହେଲେ ମଧ୍ୟ ଫଳତଃ ଏହି ଉତ୍ତରପୁରୁଷ ଧାରା ଧାରଣ କରି ରହେ କିନ୍ତୁ ଯେଉଁଠି ସ୍ରୋତ ଛିଡ଼ିଯାଉଛି, ମହାପୁରୁଷମାନେ ନିଜକୁ ବିଚ୍ଛିନ୍ନ କରି ନେଉଛନ୍ତି, ସେଇଠି

'ଅପତ୍ରିକାୟ ଭୀଷ୍ମ ବର୍ମଣେ' କହି ରାଷ୍ଟ୍ରର ପିତାମହ ଉଦ୍ଦେଶ୍ୟରେ ମଧ୍ୟ ତର୍ପଣ କରେ । ଉତ୍ତୁଙ୍ଗ ବିଶାଳ ହିମାଦ୍ରି ଶୃଙ୍ଗକୁ ଅର୍ଘ୍ୟ ଦେବା ଢଙ୍ଗୀରେ ସେ ମହନୀୟ ବ୍ୟକ୍ତିତ୍ୱ ପାଖରେ ନିଜକୁ ଅବନତ କରି ସ୍ତୁତି ତର୍ପଣ କରେ ।

ବର୍ଷା ଛୁଟିଗଲା ପରେ ଆଦ୍ୟ ଶରତ୍‌ର ସ୍ନିଗ୍ଧ ଚନ୍ଦ୍ର ସହିତ ଦକ୍ଷିଣଦିଗରୁ ଅଶରୀରୀ ଆତ୍ମାମାନେ ଯତେ ବା ଫେରି ଆସନ୍ତି । ସ୍ମୃତି ଏବଂ ଇତିହାସର ଅନୁଭବ ଭିଡ଼ । ଦକ୍ଷିଣ ଆକାଶ ଯାଏ ଘନୀଭୂତ ହୁଏ ଏ ଦେଶର ସଂସ୍କୃତି, ଧର୍ମ ପରମ୍ପରା ଓ ଇତିହାସ । ଆକୁମାରୀ ହିମାଳୟ ଏ ପ୍ରାଚୀନ ଭୂମିରେ ଏ ଯୁଗର ଅଧାଡ଼ିଆ ମଣିଷମାନେ ପିତା ପ୍ରପିତାମହଙ୍କ ଉଦ୍ଦେଶ୍ୟରେ ସତେବା ନିଜକୁ ଉନ୍ମୁଖ କରି ଧରିରଖନ୍ତି । ହୁ ହୁ ପବନ ବହେ ଦକ୍ଷିଣ ସମୁଦ୍ରରୁ, ସୁଦୂର କୁମେରୁ କିନ୍ଦ୍ରରୁ । ଆକାଶରେ ବୋଝେଇ ହୋଇଯାଏ ଅତୀତର ପାରିଜାତ ଗନ୍ଧ ।

ତର୍ପୟିତା ଅତୀତାଚ୍ଛନ୍ନ ହୋଇ ବିମୂଢ଼ ବସିରହେ । ତା'ର ନିଃଶ୍ୱାସ ପ୍ରଶ୍ୱାସରେ ଅସଂଖ୍ୟ ଆତ୍ମା ଯାତାୟାତ କରୁଥାଆନ୍ତି । ପ୍ରତି ଲୋମକୂପରେ ପୁଷ୍ପପରାଗ ପରି ବୁଣିହୋଇ ଲାଗି ରହିଥାଆନ୍ତି । ନିକଟ ଅତୀତର ସ୍ମୃତି ତାକୁ ବାଟ କଢ଼େଇ ନିଏ । ଧୂସର ନୀଳବର୍ଣ୍ଣ ଧୂମ୍ରରୂପରେ ପହଁରୁଥିବା ତା'ର ପୂର୍ବ-ପୁରୁଷମାନଙ୍କୁ ସେ ଚିହ୍ନେ । ଭିତରେ ବାହାରେ ସେମାନଙ୍କୁ ଆବିଷ୍କାର କରେ, ନମସ୍କାର କରେ । କହେ, 'ହେ ମୋର ଆତ୍ମାର ପୋଷକ, ମୋ ଆକୃତିର ଶିଳ୍ପୀ, ମୋ ଚିନ୍ତା, ମୋ ଚରିତ୍ର ମୋ ସ୍ୱପ୍ନର ବୃହତ୍ତମ ଉପାଦାନ, ମୋର ପ୍ରେରକ, ମୋର ପ୍ରତିପାଦକ, ମୋର ଆଦି ମଧ୍ୟ ଏବଂ ଅନ୍ତର ଅଧିଷ୍ଠାନ, ମୋର ରକ୍ତ, ମେଦ, ଅସ୍ଥି, ମୋର ଶୁକ୍ରକଣିକା, ମୋର ଅମୃତତ୍ୱ ହେ ମୋର ପିତୃପୁରୁଷ! ଯେଉଁ ଅପରିମେୟ ତୃଷା ନେଇ ତୁମେ ଏ ସଂସାରରେ ଯାତ୍ରାକଲ, ତାହା ଏ ଜଳସମାନ ତିଳକଣିକା ପରି ନଦୀ ପ୍ରବାହରେ ଅତ୍ରତତ୍ର ବିକୀର୍ଣ୍ଣ । ସଂସାର ଯେଉଁପରି ଅପରାଜେୟ, ଅପରିମେୟ ଥିଲା ସେହିପରି ଅଛି । ଯେଉଁଭଳି ମାନବାତ୍ମା ତୃଷିତ ରହିଥିଲା ସେହିପରି ଅଛି । ଅଗ୍ନିରେଖାର ଆର-ପାରିରେ ଉନ୍ମୁକ୍ତ, ହେ ମୋର ପିତୃପୁରୁଷ, ଶୀତଳ ହୁଅ, ଶାନ୍ତ ହୁଅ ତୃଷାମୁକ୍ତ ହୁଅ! ତୃପ୍ୟନ୍ତାମ୍!...ତୃପ୍ୟନ୍ତାମ୍!!'

# ମୁଁ ଏକ ପାଦପ

ମୋତେ ହତ୍ୟା କରାଗଲାବେଳେ ବି ମୁଁ ନୀରବ ରହିଯାଏ । ମୁଁ କାଳେ ଚିତ୍କାର କରିପକାଇବି ବୋଲି ମୋର ମୁଣ୍ଡଟି ମାଟି ଭିତରେ ପୋତି ହୋଇ-ଯାଏ । ସେଇ ମାଟିର ଅନ୍ଧଗର୍ଭରୁ ମୁଁ ଆଖିବୁଜି ରସ ଟାଣେ । ଅନ୍ଧବତୀ ପୃଥ୍ୱୀରୁ ରସ ଓ ବାସ୍ନା ଆଣି ଫୁଲ ଫଳ ଭିତରେ ବାଂଟିଦିଏ । ସେଇ ଭିତରୁ ପୁଣି ଖୁବ୍ କାକରଗୁଡ଼ିଏ ଛାଣି ନେଇ ଡାଳେ ଡାଳେ ବିଛେଇ ଦିଏ । କୁରାଢ଼ି ମୋ ଉପରକୁ ଆଉଜେଇଦେଇ କାଠୁରିଆଗୁଡ଼ିକ ସେଇ ଛାଇରେ ପଥଶ୍ରମ କାଟନ୍ତି ଏବଂ ପରିଶେଷରେ ମୋତେ ହତ୍ୟା କରନ୍ତି । ମୁଁ ଏକ ପାଦପ । ପୁରୁଷାନୁକ୍ରମେ ପ୍ରତିବାଦ କରିବାର ଅଧିକାର ମୋର ନାହିଁ । ଏବେ ନୁହେଁ, ବୋଧହୁଏ ସୃଷ୍ଟିର ପ୍ରାରମ୍ଭରୁ । ମୋର ବନ୍ଧୁ କୁଟୁମ୍ବୀ ସମସ୍ତେ ମୋ ଭଳି ଗୁଡ଼ିଏ ନୀରବ ବନସ୍ପତି । ମୋ ଚାରିଆଡ଼େ ଘେରିରହିଥିବା ମୋର ପୂର୍ବଜ ସମସ୍ତେ ମାନନୀୟ, କିନ୍ତୁ ସମସ୍ତଙ୍କୁ କାଠୁରିଆ ହତ୍ୟାକରେ । ଚୋଟ ବସିଲାବେଳେ ଯନ୍ତ୍ରଣାରେ ପ୍ରତ୍ୟେକ ପଲ୍ଲବ କମ୍ପିତ ହୁଏ । ଗୋଟି ଗୋଟି ହୋଇ ବିଶାଳ ଅବୟବଗୁଡ଼ିକ ଝଡ଼ିପଡ଼ନ୍ତି । ଶେଷରେ ନିଜେ କାତ-ମେଲାଇ ଶୋଇଯିବା ପର୍ଯ୍ୟନ୍ତ ମୋର ପ୍ରପିତାମହ ଚିଳେହେଲେ ଘୁଞ୍ଚିପାରନ୍ତି ନାହିଁ, ପାଟି ଖୋଲି ପାରନ୍ତି ନାହିଁ । ଆମ ଉପରେ କୌଣସି ଆଦିମ ଅଭିଶାପ ଅଛି । ଆମେ ମାଟି କାମୁଡ଼ି ପଡ଼ିରହିବାକୁ ବାଧ୍ୟ—ନୀରବ ନିଶ୍ଚଳ ପଡ଼ିରହିବାକୁ ବାଧ୍ୟ ।

ନଖ ଦାନ୍ତ ନ ଥିଲେ ସମସ୍ତେ ପାଦପ । ଉପରେ ଆଘାତ ପଡ଼ିଲେ ଯେ ଲେଉଟି ଘା ହାଣିପାରେ ନାହିଁ ଧାର ଧାର କ୍ଷୀର ବୁହାଇଲା ପରି ଯେ କେବଳ ଲହୁ ଲହୁ ଝରାଏ, ସେ ଆମର ସମଧର୍ମୀ । କାଇଁଚ ପରି ଆଖି ଯୋଡ଼ିକରେ ନିରୀହ ବନାନୀକୁ ପ୍ରତିଫଳିତ କରୁଥିବା ଶଶା, ଖରୁଷ, ଫବରଗୁଡ଼ିକ ସମସ୍ତେ ଶସ୍ୟ, ସମସ୍ତେ ଅନ୍ନ । ପାଚିଲା ଗହମ କ୍ଷେତ ପରି ସେମାନେ ଗୋଠ ଗୋଠ ହୋଇ ଠିଆହୋଇଥାନ୍ତି । ଏତେ ଚିକ୍କଣ ଚମଡ଼ା, ଏତେ ନରମ ମାଂସର ବନସ୍ପତିଗୁଡ଼ିକୁ ହତ୍ୟା ନକରି ଭଲା ଆଉ କଣ କରାଯାଇପାରେ? ଆଉ କୌଣସି ଉପାୟରେ ତ ସେମାନଙ୍କ ଜୀବନର ସାର୍ଥକତା ପ୍ରମାଣିତ ହୋଇପାରିବ ନାହିଁ । ସେଇଭଳି କଅଁଳା ବାଛୁରୀ, ଛୁନଛୁନିଆ ଘାଗୁଡ଼ିକଂଧା ଛେଙ୍କିଚୁଆ ଏବଂ ସେଇଭଳି ଆଦିବାସୀ ପଲ୍ଲୀର ଅବୁଝା ଅସନା, ଛଗଳା, ଭୋକିଲା ମଣିଷ ଛୁଆଗୁଡ଼ିକ । ଏ ସମସ୍ତଙ୍କୁ ହତ୍ୟା କରାହୁଏ । ବେଳେ

ବେଳେ ଦିନ ଦି'ପହରେ ଆକାଶରେ ସୂର୍ଯ୍ୟଙ୍କୁ ସାକ୍ଷୀ ରଖି ଆମକୁ ଚୋଟ ଚୋଟ ହାଣି ଗଡ଼େଇ ଦିଆହୁଏ । ଆଉ କେବେ ଆମ ଦେହ ଚାରିପଟୁ ହାତ ଉଲାରି ଦେଇ ଛାଡ଼ିଦିଆହୁଏ । ଆମେ ଝାଉଁଳିପଡୁ । ଶୁଖି ଶୁଖି ମରିଯାଉ ନୀରବରେ । ଠିକ୍ ସେମିତି ଏମାନଙ୍କୁ ହତ୍ୟା କରାହୁଏ । ଏମାନେ ପିଂଜରାହାଡ଼ ଦେଖାଇ ଆଖି ଗହ୍ୱରରୁ ସେଢ ମାଗି ମାଗି ଟଳିପଡ଼ନ୍ତି, ପ୍ରତିବାଦ କରିପାରନ୍ତି ନାହିଁ । ପ୍ରତିବାଦ କରିପାରୁନା ଆମେ ପାଦପ ଜାତି । ...ସେମାନେ କିନ୍ତୁ ଅହିରାଜକୁ ହତ୍ୟା କରିପାରିବେ ନାହିଁ । ସେ ଫୁତ୍କାର କରି ଫଣା ଟେକି ଚମକୁଥିଲାବେଳେ ତା'ଲାଂଗୁଡ଼ ଛୁଇଁ ପାରିବେ ନାହିଁ । ସଟା ମେଲେଇ ହେଂଟାଳୁଥିବା -ସିଂହକୁ ହତ୍ୟା କରିପାରିବେ ନାହିଁ । କାହିଁକି ବା ହତ୍ୟା କରନ୍ତେ? କେହି କଣ କେବେ ତା'ର ସ୍ୱଜାତିକୁ ହତ୍ୟା କରେ?

ସନ୍ଧ୍ୟାର ଛାଇ ନଇଁ ଆସୁଥିଲାବେଳେ ଝାଳସରସର ହାତ ବଢେଇ, ସେ ଯେଉଁ ଧୂଳିମାଟିରେ ଏକାକାର ଦିଶୁଥିବା ମୂର୍ତ୍ତିଟି ତାର ସପ୍ତାହ ଯାକର ମୂଲ ଗୋଟାଉଥାଏ, ସେ କେବେ ମୁହଁ ଖୋଲି କହିପାରେ ନାହିଁ । ଝାଳରେ ନିସ୍ତିକ୍ତ ପଇସା ଗଣି ଦେଇ ସେ ତା'କାନିରେ ଯେଉଁ ଚାଉଳକଂଡାକ ସଂବର ଗଂଠି ପକେଇ ବାନ୍ଧିନିଏ, ସେଥିରେ ଅଧେ ଗୋଡ଼ି । ତା'ପାଇଁ କିଲୋ ଓଜଣ ଯାଠଶ' ଗ୍ରାମ । ତା'ଘରେ ଗୋଟାଏ କୋଣରେ ଧଳା ଛଟିଆ ବାଛ ଟଙ୍କୁ ଯୋଡ଼ିଏ ନିରାହାର ଆଖିରେ ଝେ ଅନଉ ଥାଏ ସେ ତା'ର ପୂର୍ବପୁରୁଷ । ପବନରେ ଦୋହଲୁଥିବା ଦୁଇଟି ହାଡ଼ର ପଂଜୁରୀ, ଯାହା ଉପରେ କୌଣସି ବସନ କେବେ ଛେଉ ଚୋଳେ ନାହିଁ, ସେମାନେ ତା'ର ପତ୍ନୀ ଏବଂ ଅନୂଢ଼ା କନ୍ୟା । ...ଏମାନେ ମଣିଷ ବୋଲାଉଥିବା ଅନ୍ୟ ପ୍ରାଣୀଙ୍କ–ଠାରୁ ଦୂରରେ ରହନ୍ତି । ତଥାପି ସେମାନଙ୍କ ଗଂଟିରୁ ରକ୍ତ ନିଗାଡ଼ି ସେମାନଙ୍କୁ ହତ୍ୟା କରାହୁଏ । ତାଂକ ଦେହ ଶୁଖିଯାଏ, ସେମାନେ ପତ୍ର ଝରାଇ ଥୁଣ୍ଟା କମଳା ଗଛଟିଏ ପରି ନିଜର ନିଶାଖ ଛାଇ ଦେଖି ସହିପାରନ୍ତି ନାହିଁ । କାଠୁରିଆକୁ ମନେ ମନେ ସୁମରନ୍ତି—ସେ ଆସି କେମିତି ତାଂକୁ ହାଣିଦେଉ । ସେମାନେ ଗୁଡ଼ିଏ ପାଦପ, ଠିକ୍ ଆମରି ପରି ନିରୀହ, ନୀରବ, ମୁମୂର୍ଷୁ ବନସ୍ପତି ।

ମାଟି କାମୁଡ଼ି ପଡ଼ିରହିବା ସେମାନଙ୍କ ଧର୍ମ । ସେମାନେ ସମସ୍ତେ ତଳମୁହାଁ । ଉପରେ ବର୍ଷା, ତଳେ କାଦୁଅ ମଝିରେ ଉତ୍ପୀଡ଼ିତ ଯୋଡ଼ିଏ ବଳଦ, ଏବଂ ତାଂକରି ଭଳି ନୀରବ ସେ ବାପୁଡ଼ାଙ୍କୁ ମଧ୍ୟ ଶୋଷି ଶୋଷି ମାରିଦିଆହୁଏ । ସ୍ୱର୍ଗର ପାଣି ଝରିଲେ ସେଥିରେ ତା ଝାଳ ଯଦି ନ ମିଶେ, ଏ କୁଠିତା

ଭୂମିରେ ପ୍ରାଣ ସଞ୍ଚାର ହୁଏ ନାହିଁ । ସେ ମାଟିକୁ ଉଲୁସାଏ, ମେଘକୁ ଡାକାଏ କାଦୁଅ ଭିତରୁ ଆଣି ଠିଆକରାଏ ରେଶମୀ ରଙ୍ଗର ଫସଲ । ଠିକ୍ ସେମିତି ଆମେ ମାଟି ଭିତରୁ ଆଣି କାଟିଦେଉ ଅଜସ୍ର ସବୁଜ ଛାଇ ଏବଂ ବିକୀର୍ଣ୍ଣ ଇନ୍ଦ୍ରଧନୁର ରଙ୍ଗ । ଆମକୁ ଲୁଣ୍ଠନ କରିନିଆଯାଏ । ଆମର ସୁଗନ୍ଧିତ ଚନ୍ଦନ-ଗଛକୁ ଗଧ ପିଠିରେ ବୋଝେଇ ନିଆଯାଏ । ସେମିତି ସମସ୍ତ ଫସଲକୁ ଶଗଡ଼ରେ ବୋଝେଇ ନେଇଯାଏ ସାଉକାର । ଭୂଇଁ ନିରବରେ ବାହୁନୁଥିବା ବେଳେ, ହୁଡ଼ା ଉପରେ ବସି ସେ ଗଣୁଥାଏ ତା' ହାତରେ ଚୁଙ୍ଗା ହୋଇଥିବା କେତେ ଖଣ୍ଡ କାଗଜ, ଗଣୁଥାଏ ତା'ର ପଂଜରା, ତା' ଜଙ୍ଘା ଛାତର ରୁଅ, ଏବଂ ଆଙ୍ଗୁଠି ଅଗରେ ଗଣୁଥାଏ ଆଉ ଏଗାର ମାସ; ମାସର ପଂଦର ଦିନ ପାଇଁ ସେଜପାଣି ଖର୍ଚ୍ଚ । ମାଟି ସଙ୍ଗରେ ମାଟି ହୋଇ ମିଶିଯିବା ପର୍ଯ୍ୟନ୍ତ ତାକୁ ଏଭଳି କଟେଇ ରଖାହୁଏ, ଆମ ଉଦର ଗଛକୁ ସୋରା ସୋରା ଚିରି ରସ ନିଗାଡ଼ିନେଲା ପରି । ସେ ବି ପାଦପ । ବିଚାରା ଆମ ଭଳି ଦିନେ କଡ଼ କଡ ଡାକି ଢଳିପଡ଼ିବାକୁ ଚାହେଁ, କିନ୍ତୁ ପାରେ ନାହିଁ ।

ସୂର୍ଯ୍ୟ ଉଇଁବା ପୂର୍ବରୁ ଯେଉଁ ନୀରବ ପଶୁଗୁଡ଼ିକୁ ଚୁଟି ବାନ୍ଧି ହତ୍ୟା କରାହୁଏ, ଖାଦ୍ୟ ଶସ୍ୟ ପରି ଯେଉଁମାନେ ସକାଳ ପାହିଲା ବେଳକୁ ସୌଖୀନ ହୋଲା-ମାନଙ୍କରେ ବିତରିତ ହୋଇଯାଆନ୍ତି ମଣିଷ ବସତିର ଗୋଟିଏ ପ୍ରାନ୍ତରୁ ଆଉ ଗୋଟିଏ ପ୍ରାନ୍ତ ପର୍ଯ୍ୟନ୍ତ, ସେମାନଙ୍କୁ କେହି ସଂଖ୍ୟା କରେ ନାହିଁ । ଶହ ଶହ ବୋଝେଇ ଟ୍ରକରେ ଆମର ଜାତିକୁଟୁମ୍ବଙ୍କୁ ପାରିକରି ନେଲାବେଳେ ତାଙ୍କର କେହି ହିସାବ ରଖେ ନାହିଁ । ସେହିପରି ହଜାର ହଜାର କ୍ରୀତଦାସଙ୍କ ରକ୍ତରେ ପଥର ବୋଝେଇ ପିରାମିଡ୍ ଗଠାଯାଏ । ଅସଂଖ୍ୟ ଅର୍ଦ୍ଧଭୁକ୍ତ ରୁଗ୍ଣ କିରାଣୀଙ୍କ ତୁଣ୍ଡରେ ଲଗାମ୍ ଲଗେଇ ଦପ୍ତରୀଭୂତ ହଜାରେ ଚକିଆ ସରକାରୀ ଯାନକୁ ଟଣାଯାଏ । ଘାସମୁଠାକର ପ୍ରତିଦାନରେ ଦୁଗ୍ଧ ଦାନକରୁଥିବା ଗାଈ ଭଳି ଗୁଚ୍ଛିଏ ମଣିଷଙ୍କୁ ଜଡ଼ିଦିଆଯାଏ । ଏମାନେ ଯନ୍ତ୍ରଣାରେ ଥର ଥର ହୁଅନ୍ତି । ନିଷ୍ଫଳ ଚିତ୍କାର କରନ୍ତି । ବିକଳରେ ହାତଗୋଡ଼ ଛାଟିବା ଭଳି ଏ ଚିତ୍କାର ମଧ୍ୟ ପ୍ରତିବାଦ ନୁହେଁ । ଏମାନେ କେହି ଅହିରାଜ ନୁହନ୍ତି । ଏମାନେ କେହି କାମୁଡ଼ି ପାରନ୍ତି ନାହିଁ । ଏମାନଙ୍କର ନଖ ଦାନ୍ତ ସେଇ ଆଦିମ କାଳରୁ ଗଜେଇ ନାହିଁ । ଏମାନେ ଗୁଚ୍ଛିଏ ପାଦପ । ଏମାନଙ୍କୁ ମଧ୍ୟ ହତ୍ୟା କରାହୁଏ ଏବଂ ଏମାନେ ବି ନୀରବ ରହିଥାନ୍ତି ।

କାହିଁକି ସତେ ପାଦପମାନଙ୍କୁ ଏଭଳି ହତ୍ୟା କରାହୁଏ? ସେଇଟା ଗୋଟିଏ ପ୍ରବୃତ୍ତି ଜିଘାଂସା ନ ଥିଲେ ଜଣକ ପ୍ରାଣକୁ ଶୋଷିହେବ ନାହିଁ ଏବଂ ଶୋଷି

ନ ପାରିଲେ ଆଉ ଜଣେ ପ୍ରାଣ ଧାରଣ କରି ପାରିବ ନାହିଁ । ଏଣୁ ଯେଉଁଠି ପ୍ରତିବାଦ ହେଉନାହିଁ, ହତ୍ୟା କରିବା ଯେଉଁଠି ନିର୍ବିରୋଧ, ସେଇଠି ତାହା ଅପରାଧ ମଧ୍ୟ ନୁହେଁ । ଯେମିତି ଗଡ୍ଡିଏ ମାଛଙ୍କୁ ଜୀଅନ୍ତା କାଟିଲାବେଳେ ବା ଗଡ୍ଡିଏ ହରଡ଼ ଚଢ଼େଇଙ୍କୁ ଗୁଳି କରି ଝଡ଼େଇଦେଲାବେଳେ କେହି ହତ୍ୟା ହେଲା ବୋଲି କହେ ନାହିଁ, ସେମିତି ଦେଢ଼ଲକ୍ଷ ଗାର୍ଲି ମଳିମୁଣ୍ଡିଆ ମରିଗଲେ କିଏ ତାଙ୍କୁ ଖାତିର କରୁଛି? କୁଟୁମ୍ବ ପୋଷି ନ ପାରି ଶିଶୁଟିଏ ଦଉଡ଼ି ଲଗେଇ ଦେଲେ ସେଥିରେ ଅସ୍ୱାଭାବିକ କଣ ରହିଗଲା? ଏମିତି ଅଜସ୍ର ପାଦପ ମରନ୍ତି । ସେ ସବୁ କଣ ହତ୍ୟା? ଯଦିବା ହତ୍ୟା ହେଲା, ସେଥିପାଇଁ କଣ କାରଣଟିଏ ଥିବା ନିହାତି ଅନିବାର୍ଯ୍ୟ? ପ୍ରେମ ପାଇଁ କଣ କାରଣ ଅଛି କି? ତେବେ ଘୃଣା ପାଇଁ, ହିଂସା ପାଇଁ, ହତ୍ୟା ପାଇଁ କାହିଁକି କାରଣ ରହିବ? ଯାହାର କୁରାଢ଼ି ଅଛି, ସେ ଇଚ୍ଛା କଲେ ନିକଟତମ ପାଦପକୁ ଚାରିଚୋଟ ହାଣିଦେଇପାରେ । ଯେ ଚାହିଁଲା ବେଳିତ୍ କରି ଜଣକର ସମ୍ମାନ-କୁ ହତ୍ୟା କରିବା ପାଇଁ, ସେ ନିକଟତମ ଅଧ୍ୟାପକଙ୍କୁ ବଳିରୂପେ ବ୍ୟବହାର କରିପାରେ । ସେ ପାଦପକୁ ହାଣିବା କାଠୁରିଆର ମର୍‌ଜି । ଯାହାକୁ ହତ୍ୟାକଲା ବେଳେ ପାଟି ଫିଟାଇ ପାରେ ନାହିଁ, ସେ ପୁଣି କାହିଁକି ଏମିତି କୈଫିୟତ୍ ମାଗୁଛି? ସେ ପରା ପାଦପ?

କୋଟିଏ ଅସମାନତା ପାଇଁ ହୁଏତ ସେ କୈଫିୟତ୍ ମାଗୁଥାଇପାରେ । ହୁଏତ ଦାନଶୀଳ ପାଦପଟି ଭାବୁଥାଏ ଯେ ସେ ତା'ର ସମସ୍ତ ଜୀବନର ଐଶ୍ୱର୍ଯ୍ୟ ଉତ୍ସର୍ଗ କରି ଦେଉଥିବା ସତ୍ତ୍ୱେ, ଲକ୍ଷ ଲକ୍ଷ ଫୁଲ ଏବଂ ଫଳ ଅକୁଣ୍ଠିତ ଅଜାଡ଼ିଦେବା ସତ୍ତ୍ୱେ, କାଠୁରିଆଙ୍କୁ ବାହୁମେଲେଇ ଛାୟା-ଶୀତଳ ରଖୁଥିବା ସତ୍ତ୍ୱେ ତାକୁ ସେ କାହିଁକି ଆଘାତ କରେ? ମାଟିରୁ ଖାଇ ବଞ୍ଚିରହେ ପାଦପ ଅଥଚ ତାଦ୍ୱାରା ଅନୁଗୃହୀତ କାଠୁରିଆ ହିଁ ତାକୁ ହତ୍ୟା କରେ । ଫୁଲର ସୌରଭ ଦେଲେ କଣ କୁରାଢ଼ିର ହାଣ ଖାଇବାକୁ ହୁଏ? ଭଲ ଭଲ ସ୍ୱାଦିଷ୍ଟ ଫଳ ତା ମୁହଁରେ ଅଯାଚିତ ଅଜାଡ଼ିଲେ କଣ ସେ ଏମିତି ନିର୍ବିଚାର ହତ୍ୟା କରେ?—ହଁ, କରେ । ଶୁଣ, ପୃଥିବୀର ସ୍ଥାବର ନୀରବ ପାଦପ ଜାତି; ତମକୁ ହତ୍ୟା କରାଯାଏ । ତମର ତଥାକଥିତ ସର୍ବସ୍ୱ ଦାନ ସତ୍ତ୍ୱେ ହତ୍ୟା କରିବା ଏକମାତ୍ର ପ୍ରଥା । ଏଠି ଯେ ଦିବ୍ୟ ପ୍ରେମ ଦାନ କରେ, ତାକୁ କାଠ ଚୁକି ଉପରେ କଣ୍ଟା ମାରିଦିଆଯାଏ । ଯେ ଜ୍ଞାନ ଦାନ କରେ, ତାକୁ ବିଷ ପିଆଇ-ଦିଆଯାଏ । ଏଠି ପ୍ରତିଦାନ ଆଶା କରିବା ମୂର୍ଖତା । ତୋଟି ପାଖରେ ଚୋଟ ହାଣୁଥିବା ବେଳେ ଯଦି ପାରୁଛୁ କ୍ଲାନ୍ତ କାଠୁରିଆ ଉପରେ ଛାଇ ଘୋଡେଇ

ରଖିଥାଅ । ଯଦି ପାରୁଛୁ, ପ୍ରାର୍ଥନା କରୁଥାଅ—'ହେ ପିତା, ଏହାଙ୍କୁ କ୍ଷମା କର, ଏ ଜାଣି ପାରୁ ନାହିଁ ଏ କଣ କରୁଛି ।'

ସେଦିନ ନୈମିଷାରଣ୍ୟରେ ଜହ୍ନରାତି ହୋଇଥାଏ । ପାଖେଆଖେ କୌଣସି କାଠୁରିଆର ଚିହ୍ନ ନଥାଏ । ପବନର ଶୀତଳ ହିଲ୍ଲୋଳରେ ପୁରାତନ ବଟ ଗଛର ବୁଢ଼ା ବଡ଼ବଡ଼ିଆ ପତ୍ରଗୁଡ଼ିକୁ ଖଡ଼୍ ଖଡ଼୍ କରି ଆମ ଭାଷାରେ କହିଲେ...'କେହି କାହାକୁ ହତ୍ୟା କରନ୍ତି ନାହିଁ ପିଲେ, ପରସ୍ପରକୁ ଖାଇ ବଞ୍ଚନ୍ତି କେବଳ । ଏ ସମସ୍ତଙ୍କୁ ଏକାଠି ଖାଉଥାଏ ଜଣେ । ତାକୁ କେହି ଜାଣନ୍ତି ନାହିଁ ।' ଆମେ ଶୋଉକାମାନେ ହସିଲୁ—ଭାରି ଫଡର୍ଫଣରେ । ଆମ ପାଦପସମାଜରେ ହସିବା ମନା । ହସିଲେ କାଳେ ଶବ୍ଦ ହୁଏ ।

ସେମିତି ସେଦିନ ସୁନା ପତ୍ରରେ ଭର୍ତ୍ତିହୋଇଥିବା ଶିଆଳି ଦାଢ଼ରେ ଅଶିଣା ଜହ୍ନରେ ନୀରବ ବସିଥିଲେ ସେ ଚାଁଟାଯାକର ମଣିଷ । କାହାରି ନଖ ନାହିଁ, କାହାରି ଦାନ୍ତ ନାହିଁ । ସବୁଠାରୁ ବୁଢ଼ା ପଧାନ କହିଥିଲା—ସେଇ ଉକ୍ତି କିଛି । ତାର ଆଶା କାଠୁରିଆ ଆସିବ ନାହିଁ । ଆମେ ସବୁ ଜାଣିଥିବୁ ସେ ଠିକ୍‌ବେଳେ ଆସି ହାଣିନେବ । ସେ ତାର କୁରାଢ଼ି ସଜେଇ ରଖିଛି । ତା' ଦାଢ଼ ପରଖ କରିଛି । ଜହ୍ନରାତି ନୀରବରେ କ୍ଷୟିଚଲା । ...କାଠୁରିଆ ଏ ବାରକ ମୋତେ ବଞ୍ଚିବାକୁ ଦିଅ ମୋର ଅନେକ ଶାଖା ମେଲିବାର ବାକି ଅଛି । ମୋର ଫୁଲର ସ୍ୱପ୍ନ ସରିନାହିଁ । ସେ ଫୁଲ ସବୁ ତୁମର ! କାଠୁରିଆ, ମୋତେ ବଞ୍ଚିବାକୁ ଦିଅ ମୁଁ ଏକ ନିରୀହ ପାଦପ ।



# ମୁଁ ସତ୍ୟଧର୍ମୀ କହୁଛି

ଆପଣଙ୍କ ଇଜ୍‌ଲାସ୍‌ରେ ଏହା ବୋଧହୁଏ ମୋର ଶେଷ ବୟାନ । ମୁଁ ଯାହା କହିବି, ସପୂର୍ଣ୍ଣରୂପେ ସତ୍ୟ କହିବି । ସତ୍ୟ ବ୍ୟତିରେକ ଆଉ କିଛି କହିବି ନାହିଁ ।

ମୋ ବିରୁଦ୍ଧରେ ସମସ୍ତ ଅଭିଯୋଗ ମୁଁ ଶୁଣିସାରିଛି । ସେଥିରେ କୁହାଯାଇଛି ଯେ ମୁଁ ରାଷ୍ଟ୍ରଧର୍ମର ବିରୁଦ୍ଧାଚରଣ କରେ; ମୁଁ ଦେଶଦ୍ରୋହୀ । ମୁଁ ପ୍ରତିଷ୍ଠିତ ମନ୍ଦିର ମସ୍‌ଜିଦ୍‌କୁ ଅସ୍ୱୀକାର କରେ; ମୁଁ ନାସ୍ତିକ । ଧନ, ମାନ, ଜ୍ଞାନରେ ଯେଉଁମାନେ ଏ ସମାଜରେ ସର୍ବସମ୍ମତିକ୍ରମେ ମାନନୀୟ ମୁଁ ସେମାନଙ୍କୁ ସର୍ବସମକ୍ଷରେ ଅପଦସ୍ଥ, ଲାଞ୍ଛିତ କରେ ; ମୁଁ ଦମ୍ଭୀ, ଅହଂକାରୀ, ପଣ୍ଡିତମ୍ମନ୍ୟ । ବର୍ଦ୍ଧିଷ୍ଣୁ ତରୁଣ ମାନଙ୍କୁ କୌଶଳରେ ପ୍ରଭାବିତ କରି ଉଚ୍ଛୃଙ୍ଖଳ, ବିଭ୍ରାନ୍ତ କରେ--କୁଶିକ୍ଷା ଦେବା ମୋର ବୃତ୍ତି । ପରିଶେଷରେ ଆପଣମାନଙ୍କୁ ସତର୍କ କରାଇଦିଆଯାଇଛି ଯେ ମୁଁ ମୋର ଚଟୁଳ ପ୍ରଗଳ୍‌ଭତାରେ ଆପଣଙ୍କୁ ହୁଏତ ବଶୀଭୂତ କରିଦେଇପାରେ । ଏଣୁ ସାବଧାନ ରହିଥିବେ ।

ଶେଷୋକ୍ତ ଅଭିଯୋଗଟି ଆମୋଦକର ହୋଇଥିବାରୁ ପ୍ରଥମେ ଉତ୍‌ଥାପିତ କରୁଛି । ଏ ପରିଣତ ବୟସରେ ବାଗ୍ମୀ ହେବାର ଅଭିଳାଷ ମୋର ନାହିଁ । ମୋର ରୂକ୍ଷ ସ୍ୱରରେ ଛନ୍ଦ ନାହିଁ ବା ସଙ୍ଗୀତମୟତା ନାହିଁ । ଏ ପଳିତ ଅବୟବରେ ମନୋରମ ସ୍ନିଗ୍‌ଧତା ନାହିଁ । କ'ଣ ପ୍ରୟୋଗ କରି ମୁଁ ଆପଣଙ୍କୁ ବଶୀଭୂତ କରିବି ବୁଝିପାରୁନାହିଁ । ଏଣୁ ଆପଣ ସେଭଳି କୌଣସି ଆଶଙ୍କା ନ କରି ନିଶ୍ଚିନ୍ତ ରହନ୍ତୁ ;ବରଂ ଆପଣଙ୍କର ଯଥୋଚିତ ଉଦାର ମନରେ ମୋତେ କିଛି ସମୟ ଶୁଣିବାକୁ ଅବଧାନ ହୁଅନ୍ତୁ । ଆପଣଙ୍କର ଏ ଭବ୍ୟ ପ୍ରକୋଷ୍ଠର ଶାଳୀନତା ବିଷୟରେ ମୁଁ ଅଜ୍ଞ । ନ୍ୟାୟାଳୟରେ ପ୍ରବେଶ କରିବା ମୋ ପକ୍ଷରେ ଏଇମାତ୍ର ପ୍ରଥମ । ଏଣୁ ଏଠିକାର ଆଦବ୍ କାଇଦା ମୁଁ କିଛି ଜାଣେ ନାହିଁ । ସେଥିପାଇଁ ମୋତେ କ୍ଷମା କରିବେ । ରୋକ୍ ଠୋକ୍ ଦରଭସଦ ନିରାଡ଼ମ୍ବର ସତ୍ୟ କହିଲା ବେଳେ ମୁଁ ହୁଏତ ତା ସାନୁନୟ ପ୍ରକାଶ କରି ପାରିବି ନାହିଁ । କାରଣ, ଆଜି ନୁହେଁ, ଚିରକାଳ ମୁଁ ନିର୍ଭୀକ । ଯାତନା କିମ୍ବା ମୃତ୍ୟୁ ଭୟରେ ମୁଁ ସତ୍ୟରୁ ବିଚଳିତ ହୋଇନାହିଁ, ହେବା ସଂଭବ ନୁହେଁ । ପ୍ରତିପକ୍ଷର ହିଂସ୍ରତାରୁ ମୁଁ ଅନୁମାନ କରିପାରୁଛି ଯେ ଏଥିପାଇଁ ମୋତେ ହତ୍ୟା କରାଯାଇପାରେ, କାରଣ ଯୁଗେ ଯୁଗେ ସତ୍ୟପାଇଁ

ହତ୍ୟା କରାଯାଇଛି । ମୋ ପରେ ମଧ୍ୟ ସେହିପରି ଅନନ୍ତକାଳ ହତ୍ୟା କରାଯିବ । ମୁଁ କିନ୍ତୁ କହିରଖୁଛି ଯେ ମୋତେ ବାରବାର ମରିବାକୁ ପଡ଼ିଲେ ମଧ୍ୟ ମୁଁ ସତ୍ୟରୁ ବିଚ୍ୟୁତ ହେବିନାହିଁ, ହୋଇପାରିବି ନାହିଁ । ପ୍ରତିପକ୍ଷପାଇଁ ମୋର କୌଣସି ଆକ୍ରୋଶ ନାହିଁ । ତାଂକୁ ବିରୋଧ କରିବା ପାଇଁ ମୁଁ ବୟାନ ଦେଉନାହିଁ ।

ତାଂକର ଅଭିଯୋଗ ଦ୍ୱାରା ମୋର ପ୍ରାଣହାନିର ଆଶଙ୍କା କରି ନିଜକୁ ବଂଚାଇବାକୁ ମଧ୍ୟ ଚେଷ୍ଟା କରୁନାହିଁ । କାରଣ ଏଠି ଆପଣଙ୍କ ଦୟା ଭିକ୍ଷା କରି ଥରେ ବଂଚିଗଲେ ମୁଁ ଚିରକାଳ ବଂଚି ରହିପାରୁନାହିଁ, ଏ କଥା ମୁଁ ଜାଣେ । ମୋ ଦିଗ୍‌ବଳୟରେ ଶୂନ୍ୟ-ସମୁଦ୍ର ଉଦୟ ହୋଇ ସାରିଲାଣି । ମୋର ଯାତ୍ରାକାଳ ଅତି ସୀମିତ । ଏଣୁ ସେଭଳି କିଛି ଅଭିପ୍ରାୟ ରଖି ମୁଁ ବୟାନ ଦେଉନାହିଁ । ମୋର ବକ୍ତବ୍ୟର ଉଦ୍ଦେଶ୍ୟ ହେଲା ଯେ ସତ୍ୟର ଅପଳାପକୁ ମୁଁ ଆଜୀବନ ବିରୋଧ କରିଆସିଛି । ମୋତେ ସନ୍ଦେହ ହେଉଛି ଯେ ମୋର ଅଭିଯୋଗକାରୀମାନେ ମିଛ କହୁଛନ୍ତି । ଯଦି ସତ୍ୟ କହୁଥାଂତି ତେବେ ମୁଁ ତାହା ଜାଣିନାହିଁ; ମୁଁ ମୋର ସନ୍ଦେହ ମୋଚନ କରି ତାଂକଠାରୁ ତାହା ମାନିନେବାକୁ ପ୍ରସ୍ତୁତ । ମୋର ଦ୍ୱିତୀୟ ଉଦ୍ଦେଶ୍ୟ ହେଲା ଯେ ଯେହେତୁ ନ୍ୟାୟର ତୁଳାଦଂଡରେ ଉଭୟ ପକ୍ଷ ସନ୍ତୁଳିତ ହେଲେହେଁ ବିଚାର ସଭବ, ଏବଂ ସ୍ୱପକ୍ଷ ଓ ପରପକ୍ଷର ଯୁକ୍ତି ଉପରେ ସିଦ୍ଧାଂତ ନିର୍ଭରଶୀଳ, ସେହି ନ୍ୟାୟ ବିଚାର ସକାଶେ ମୁଁ ଯାହା ସତ୍ୟ ବୋଲି ଜାଣେ ତାହା ଏଠାରେ ଉପସ୍ଥାପିତ କରିବା ମୋର କର୍ତ୍ତବ୍ୟ ।

କୁଶିକ୍ଷା ଦେବା ମୋର ବୃତ୍ତି ନୁହେଁ । ମୁଁ ଆଦୌ ଶିକ୍ଷା ଦିଏ ନାହିଁ । ମୋର ଆଚରଣ ଦ୍ୱାରା କିମ୍ବା ମୋର କଥା ଶୁଣିବାକୁ କେହି ହୁଏତ ଆକୃଷ୍ଟ ହୋଇଥାଇପାରେ । ମୁଁ କାହାକୁ କେବେ ମୋ ପାଖକୁ ଡାକିନାହିଁ । ସେମାନେ ସ୍ୱତଃପ୍ରବୃତ୍ତ ହୋଇ ଆସିଲେ ତାଂକୁ ପ୍ରତ୍ୟାଖ୍ୟାନ କରିଦେବା ମୋର ଶିଷ୍ଟାଚାର ନୁହେଁ । ନିଷ୍ଠାର ସହିତ ମୁଁ ଆଜୀବନ ସତ୍ୟର ସଧାନ କରିଛି କେବଳ । ଏହାକୁ ବୃତ୍ତି କରି ଅର୍ଥ ଉପାର୍ଜନ କରିନାହିଁ । ସେଭଳି ପ୍ରମାଣ ଯଦି ଅନ୍ୟ ପକ୍ଷ ପ୍ରସ୍ତୁତ ରଖିଥାଂତି, ତାହା ସେମାନେ ବର୍ତ୍ତମାନ ଦର୍ଶାଇ ପାରଂତି । ମୁଁ ଜାଣେ ସେଭଳି ପ୍ରମାଣ ତାଂକ ପାଖରେ ଆଦୌ ନାହିଁ, ଏଣୁ ଏହା ମୋର ବୃତ୍ତି ନୁହେଁ । ତା ପାଇଁ ଚାକ୍ଷୁଷ ପ୍ରମାଣ ଚାହାଂତି? ତାହେଲେ ହେଇଦେଖନ୍ତୁ ମୋର ଦାରିଦ୍ର୍ୟ, ମୋର ନିରନ୍ନ ଶରୀର, ମଳିନ ଚୀର ବସ୍ତ୍ର, ମୋର

ଜୀର୍ଣ୍ଣକୁଟୀ । ଅର୍ଥକରୀ ବୃତ୍ତିରେ ସମର୍ଥ କୌଣସି ବ୍ୟକ୍ତିର ଅବସ୍ଥା ଏ ପରିଣତ ବୟସରେ କଣ ଏଭଳି ହେବା ସମ୍ଭବ? ଏହା କ'ଣ ଯଥେଷ୍ଟ ପ୍ରମାଣ ନୁହେଁ ଯେ ଏ ଅଭିଯୁକ୍ତ ବୃଦ୍ଧ ତା'ର ସାଂସାରିକ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଘୋର ଅବହେଳା କରି ଆସିଛି—ଏବଂ ତାହା କେବଳ ସତ୍ୟପାଇଁ? ସତ୍ୟସନ୍ଧାନ ମୋର ବୃତ୍ତି ନୁହେଁ, ଧର୍ମାବଚାର, ତାହା ମୋର ଧର୍ମ । ସତ୍ୟ ପ୍ରଚାରକରି ମୁଁ ଅର୍ଥ ଉପାର୍ଜନ କରେନା ।

ମୁଁ ଶିକ୍ଷା ଦେଉ ନ ଥିବା ସତ୍ତ୍ୱେ ଯଦି କେହି ମୋର ସଂସ୍ପର୍ଶରେ ଆସି କୁଶିକ୍ଷିତ ହୋଇଥାନ୍ତି, ତା'ର ଦୃଷ୍ଟାନ୍ତ ମଧ୍ୟ ମୁଁ ପାଉନାହିଁ । ବରଂ ସେମାନେ ଏବେ ଏବେ ଏ ସମାଜରେ ଶୀର୍ଷନତନ କରିଛନ୍ତି । ହଁ, ମୁଁ ସ୍ୱୀକାର କରୁଛି ଯେ ସେମାନେ ସାଧାରଣ ଜନତାଠାରୁ ନିଶ୍ଚୟ ଭିନ୍ନ । ସେମାନେ ମୋର ପ୍ରଭାବରେ ପଡ଼ି ହୁଏତ କିଛି ମାତ୍ରାରେ ସ୍ୱାଧୀନଚେତା ହୋଇଯାଇଛନ୍ତି । ସତ୍ୟାନୁରାଗ ହେତୁ କିଛି ନିର୍ଭୀକ ହୋଇଯାଇଥିବା ମଧ୍ୟ ସ୍ୱାଭାବିକ । ଜୀବନରେ ଗୋଟାଏ ମହତ୍ତର ମୂଲ୍ୟର ବିକଳ୍ପ ଥିବାରୁ ହୁଏତ ଗ୍ରାସାଚ୍ଛାଦନ ତାଙ୍କର ଚରମ ଲକ୍ଷ୍ୟ ହୋଇପାରୁନାହିଁ । ତାଙ୍କର ପରିବାର ଏତଦ୍ୱାରା ଦୁଃଖିତ ନୁହନ୍ତି । ସେମାନେ ସ୍ୱଚ୍ଛ ଅନୁତପ୍ତ ନୁହଁନ୍ତି । ତାଙ୍କୁ କୁଶିକ୍ଷିତ ବୋଲି ବାଦଦ କରିବା ପରିବର୍ତ୍ତେ ଏ ସମାଜ ବରଂ ତାଙ୍କୁ ନେଇ ଗର୍ବ ଅନୁଭବ କରୁଛି । ତେବେ ଏତଦ୍ ସତ୍ତ୍ୱେ ଆପଣଙ୍କ ଇଚ୍ଛା ଅନୁସାରେ ଯଦି ଏହା କୁଶିକ୍ଷା ପଦବାଚ୍ୟ, ମୋର ସେଥିରେ କିଛି କହିବାର ନାହିଁ ।

କେବଳ ତରୁଣଙ୍କ ପ୍ରତି ମୋର ସେପରି କିଛି ପକ୍ଷପାତିତା ନାହିଁ । ସେମାନଙ୍କୁ ବିଭ୍ରାନ୍ତ କରିବାର ଅଭିସନ୍ଧି ମଧ୍ୟ ମୋର ନାହିଁ । ସତ କହୁଛି, ମୁଁ କେବେହେଲେ ଭାବିନାହିଁ ଯେ ମୋ ପାଖରେ ବସିଥିବା ବ୍ୟକ୍ତିଟି ବୃଦ୍ଧ କି ତରୁଣ । ବୟସ ନିରପେକ୍ଷ ରହି, ମୁଁ କେବଳ ମୋର ଗୋଟିଏ ମାତ୍ର ଅଭିଳାଷ ପ୍ରକାଶ କରିଛି । ତାହା ହେଲା, ଯଦି କେହି ସତ୍ୟ କ'ଣ ଜାଣିଥାଅ, ଦୟାକରି ମୋତେ ସେଇଠି ପହଂଚାଇ ଦିଅ । ତରୁଣମାନଙ୍କ ସହିତ ଆଳାପ କଲାବେଳେ ମଧ୍ୟ ମୋର ସମସ୍ତ ଚେତନା ସେହି ଏକମାତ୍ର ଅଭିପ୍ରାୟରେ ଆଚ୍ଛନ୍ନ ରହିଥାଏ । ମୁଁ ନିଜକୁ ନିଜେ ପ୍ରଶ୍ନ କରିବାକୁ ଯାଇ ସେମାନଙ୍କୁ ଅନେକ କଥା ପଚାରି ପକାଏ । ସେ ଅସ୍ୱସ୍ତିକର ପ୍ରଶ୍ନଗୁଡ଼ିକ ତାଙ୍କ ଭିତରକୁ ବୁଡ଼ିଗଲାବେଳେ ସେମାନେ ଅସ୍ଥିର ବୋଧ କରୁଥିବେ । ସମସ୍ତେ ସେଇଭଳି ଅସ୍ଥିର ବୋଧ କରନ୍ତି, ମୁଁ ମଧ୍ୟ । ଅନ୍ତର୍ମୁଖୀ ହୋଇଯାଏ ସେମାନଙ୍କ ଦୃଷ୍ଟି ।

ସେମାନେ ଖୋଜିବାକୁ ଆରମ୍ଭ କରନ୍ତି, ପ୍ରତ୍ୟେକ ନାମ ରୂପର ପଶ୍ଚାତ୍‌ରେ ସେଇ ଗୋଟିଏ ମାତ୍ର ରହସ୍ୟକୁ ଯାହାକୁ ମୁଁ ଏବେ ମଧ୍ୟ ଖୋଜୁଛି । ତରୁଣମାନେ ହୁଏତ ମୂଳତଃ ବିଭ୍ରାନ୍ତ । ସେମାନେ ଜାଣିବାକୁ ଚାହାଁନ୍ତି ସେମାନଙ୍କର ଲକ୍ଷ୍ୟ, ଏଣୁ ସ୍ୱତଃ ମୋ ପାଖକୁ ଆସନ୍ତି—ବିଭ୍ରାନ୍ତ ହେବାକୁ ନୁହେଁ, ଦିଗ ପାଇବାକୁ । ମୁଁ ତାଙ୍କୁ ହୁଏତ ଦିଗ ଦେଖାଇଦେଇପାରେ ନାହିଁ, କିନ୍ତୁ ନିଷ୍ଠାର ସହିତ ଖୋଜିବା ଶିଖେଇଦିଏ । ସେମାନଙ୍କ ଯାତ୍ରା ଆହୁରି ଅନେକ ବାକି । ଏଣୁ ସେଇଭଳି ଦିଗ ଖୋଜିବା ତାଙ୍କ ପାଇଁ ସାର୍ଥକ ଏବଂ ଯଥାର୍ଥ । କିନ୍ତୁ ଯେଉଁମାନଙ୍କର ଯାତ୍ରା ସରିଆସିଲାଣି ସେମାନେ ଜାଣି-ବାକୁ ଚାହାଁନ୍ତି, କେଉଁ ବାଟେ ଆସିଲେ ଏବଂ ଅବଶିଷ୍ଟ କେଉଁ ବାଟେ ଯିବେ । ଏଇ କାରଣରୁ ହୁଏତ ସେମାନେ ଅପେକ୍ଷାକୃତ କମ୍ ସଂଖ୍ୟାରେ ମୋ ପାଖକୁ ଆସିଥିବେ, ମୁଁ ଲକ୍ଷ୍ୟ କରିପାରିନାହିଁ ।

ସେମାନେ ଆସି ନାହାଁନ୍ତି ସତ, ମୁଁ କିନ୍ତୁ ଯାଇଛି ସେଇଭଳି ଅନେକଙ୍କ ପାଖକୁ । ଯେତେବେଳେ ଶୁଣିଛି ଯେ ସେମାନେ ବିଜ୍ଞ, ବହୁ ଶାସ୍ତ୍ରରେ ଅଧିତ-ବିଦ୍ୟ ମୁଁ ତାଙ୍କ ପାଖରେ ପହଂଚିଛି ଅନେକ ଭରସା ନେଇ । ମୋର ଏକ-ମାତ୍ର ଉଦ୍ଦେଶ୍ୟ, କେବଳ ସତ୍ୟର ଅନୁସନ୍ଧାନ । ଗଭୀର ଉତ୍କଂଠାରେ ମୁଁ ସେମାନଙ୍କ ଜ୍ଞାନକୁ ପରୀକ୍ଷାକରିଛି । ନିର୍ମମ ଭାବରେ ପ୍ରଶ୍ନ କରିଛି, କାରଣ ସତ୍ୟ ମୋ ଜୀବନର ବୃହତ୍ତମ ମୂଲ୍ୟ । ସେମାନଙ୍କ ଭିତରର ସଂଦିଗ୍ଧ ଖୋଜିସାରିଲା ପରେ ରିକ୍ତହସ୍ତରେ ଯେତେବେଳେ ମୁଁ ବିଷଣ୍ଣ ଠିଆହୁଏ, ମୁଁ ବୁଝିପାରେ ନାହିଁ, କାହିଁକି ସେ ମହାଶୟ କ୍ରୋଧରେ ଅଗ୍ନିବର୍ଷା କରୁଥାନ୍ତି, ଏବଂ ମୋ ଚାରିଆଡ଼େ ଗୋଟାଏ ବିମୁଗ୍ଧ ଜନତା କାହିଁକି ମୋତେ ଅଭିନନ୍ଦିତ କରୁଥାଏ । ମୋତେ ବିଶ୍ୱାସ କରନ୍ତୁ, ମୁଁ କେବେ କାହାର ଅନିଷ୍ଟ କରିବା ଚିନ୍ତା କରିନାହିଁ, ମୋ ଦ୍ୱାରା କେହି କେବେ ଲାଞ୍ଛିତ ହେଉ ବା ଅପମାନିତ ହେଉ ଏହା କେତେବେଳେ ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ମୋର ଦୁର୍ଭାଗ୍ୟ ଯେ, ଆପଣଙ୍କ କଥାକଥିତ ଜ୍ଞାନୀ ପଣ୍ଡିତ ମାନନୀୟ ବ୍ୟକ୍ତି ସମସ୍ତେ ଯାହା ଦେଖାଯାନ୍ତି, ପ୍ରକୃତରେ ସେ ତାହା ନୁହଁନ୍ତି । ସେମାନଙ୍କର ପ୍ରକାଣ୍ଡ ଆବରଣ ଭିତରୁ ତାଙ୍କର ପ୍ରକୃତ ଖର୍ବ ଦୁର୍ବଳ ରୂପଗୁଡ଼ିକୁ ପ୍ରକାଶିତ କରିବାରେ ମୁଁ ଅବଶ୍ୟ ଦାୟୀ । ସତ୍ୟ ଖୋଜୁଖୋଜୁ ମୁଁ ଯାହା ଉନ୍ମୋଚିତ କରିଛି, ସେଥିପାଇଁ ମୁଁ ବିଡ଼ମ୍ବିତ, ଲଜ୍ଜିତ ଅନୁଭବ କରୁଛି । ସମୟ ସମୟରେ ଯାହା ଆବିଷ୍କୃତ ହୋଇଛି, ସେଥିପାଇଁ ସେ ମହାଶୟ, କିମ୍ବା ଆପଣ, ଅଥବା ମୁଁ ନିଜେ ପ୍ରସ୍ତୁତ ନଥିଲୁ । ନିଜର ନିରାବରଣ ନଗ୍ନରୂପ ପାଇଁ କେହି କେତେବେଳେ

ପ୍ରସ୍ତୁତ ନଥାଂତି । ଏଣୁ ହୁଏତ ଲାଞ୍ଛନା ଏବଂ ଅପମାନ ହେଲା ବୋଲି ଅଭିଯୋଗ କରାହୋଇଛି ।

ମୁଁ ବାରଂବାର କହିଛି ଏବଂ ଏବେ ମଧ୍ୟ ଦୃଢ଼ତାର ସହିତ ଘୋଷଣା କରୁଛି ଯେ ମୁଁ ଅଜ୍ଞ । କୌଣସି ପଣ୍ଡିତମ୍ମନ୍ୟ ବ୍ୟକ୍ତି ଏହା ହୁଏତ କରିପାରନ୍ତା ନାହିଁ । ତଥାପି ମୋତେ ଆପଣମାନେ ପୃଥିବୀର ସର୍ବଶ୍ରେଷ୍ଠ ଜ୍ଞାନୀ ବୋଲି ପ୍ରଚାର କରୁଛଂତି । ଆପଣ କେଉଁ କାରଣରୁ ସେପରି କହୁଛଂତି, ମୁଁ ଅନୁମାନ କରିପାରୁଥିଲେ ସୁଦ୍ଧା, ଏଭଳି ଅପପ୍ରଚାରର କାରଣ ଆପଣମାନେ ଜାଣଂତି ନାହିଁ । କହୁଛି ଶୁଣନ୍ତୁ ! ବୁଦ୍ଧି ହେଲା ଦିନଠାରୁ ମୁଁ ମୋର ଅଜ୍ଞତା ବିଷୟରେ ଗଭୀରଭାବରେ ସଚେତନ ଥିଲି । ଏକଦା ଦୈବୀବାଣୀ ହେଲା ଯେ ମୁଁ ଏ ପୃଥିବୀର ବିଜ୍ଞତମ ବ୍ୟକ୍ତି । ଦେଶଦେଶାଂତରରେ ପର୍ଯ୍ୟଟନ କରି ମୁଁ ଶେଷରେ ଦୈବୀବାଣୀ ସତ୍ୟ ବୋଲି ପ୍ରମାଣ ସଂଗ୍ରହ କଲି । ଏଥିରେ ସଂଦେହ ନାହିଁ ଯେ ମୁଁ ହିଁ ପୃଥିବୀର ବିଜ୍ଞତମ ବ୍ୟକ୍ତି । ଆପଣ ନିଶ୍ଚୟ କହିବେ ଯେ ଅଭିଯୋଗ ଏହିଠାରେ ପ୍ରମାଣିତ ହୋଇଗଲା । ଏହାହିଁ ତ ଦଂଭୀ, ଦର୍ପୀ, ପଣ୍ଡିତମ୍ମନ୍ୟ ମୂର୍ଖର ଭାଷା ! କିଂତୁ ମୋ ଜୀବନର ବିଚିତ୍ର ବିଡ଼ଂବନା ଶୁଣନ୍ତୁ । ମୋ ମାଧ୍ୟମରେ ଦୈବୀବାଣୀ ସମଗ୍ର ମାନବ ଜାତିକୁ ପରିହାସ କରିଛି । ମଣିଷ ମାତ୍ରେ ଅଜ୍ଞ । ଏଣୁ ଅଂତତଃ ଏଇ ଟିକକ ଜ୍ଞାନର ଅଧିକାରୀ ହୋଇ-ଥିବାରୁ ମୁଁ ବିଜ୍ଞ । ମୁଁ ନିଜେ ଅଜ୍ଞ ବୋଲି ଜାଣିବା ହିଁ ମୋର ବିଜ୍ଞତା । ଏଣୁ ଆପଣମାନେ ଯେତେବେଳେ ମୋତେ ପୃଥିବୀର ବିଜ୍ଞତମ ବ୍ୟକ୍ତି ବୋଲି ଆଖ୍ୟାତ କରଂତି, ମୁଁ ଏ କ୍ଷୁଦ୍ର ପୃଥିବୀଟି ପାଇଁ ଏବଂ ତା'ଉପରେ ବାସ କରୁଥିବା ଏ ଅସଂଖ୍ୟ ବ୍ୟକ୍ତି ଗୁଡ଼ିକଂକ ପାଇଁ ଲଜ୍ଜିତ ହୁଏ, ସେମାନଂକର ଅନିବାର୍ଯ୍ୟ ବିଧିଲିପି ପାଇଁ ମର୍ମାହତ ହୁଏ । ହେ ମୋର ବିଜ୍ଞ ବିଚାରକମଂଡଳି, ଅଜ୍ଞତାହିଁ ମାନବ ଜାତିର ଚିରଂତନ ଅଭିଶାପ । ଏହି କାରଣରୁ ହୁଏତ ଯେ ସତ୍ୟର ସଂଧାନ କରେ ସେ ସାଧାରଣତଃ ମାନବ ସ୍ୱଭାବର ବିରୁଦ୍ଧାଚରଣ କରେ ।

ଈଶ୍ୱର କଣ ମୁଁ ଜାଣେନା । ସେ ଜ୍ଞାନ ମୋର ନାହିଁ । ଅସଂଖ୍ୟ ତଥାକଥିତ ବିଜ୍ଞ ଲୋକେ ସେ ବିଷୟରେ ଅନେକ ପ୍ରଗଲ୍ଭ ଭାଷଣ ଦେବାର ହୁଏତ ଶୁଣିଛି । ସେମାନଂକ ଅଜ୍ଞତାରେ ମୋର ଅଜ୍ଞତା ଦୃଢ଼ୀଭୂତ ହୋଇଛି କେବଳ । କିଂତୁ ସର୍ବସମକ୍ଷରେ ମୋ ଜୀବନର ନିଗୂଢ଼ତମ ରହସ୍ୟ ଆଜି ପ୍ରକାଶ କରୁଛି, ଶୁଣନ୍ତୁ । ମୋ ଭିତରେ ଗଂଭୀର ଘଂଟାଧ୍ୱନି ପରି ଗୋଟାଏ ଶାଣିତ ସ୍ୱର

ମୁଁ ଅହରହ ଶୁଣୁଥାଏ । ସେ ସ୍ୱର କେବଳ ବାରଣ କରେ; ଅସତ୍ୟ, ଅଶୁଭ, ଅକଲ୍ୟାଣରୁ ସେ ମୋତେ ଦୃଢ଼ଭାବରେ ନିବୃତ୍ତ କରେ । ମୁଁ କେବଳ ତା' ଠାରୁ ଶୁଣିଆସିଛି—ନା, ନା, ନେତି, ନେତି, ନେତି ! ସେ କଦାପି କହିନାହିଁ, ଏହାହିଁ ସତ୍ୟ, ଏହାହିଁ ମାର୍ଗ, ଏହାହିଁ ଶୁଭ । ଏଣୁ ମୋର ଏ ଦୁଃଖମୟ ଜୀବନ । ମୁଁ ତାଙ୍କୁ ଶୁଣେ, ନ ଶୁଣିବାର ଉପାୟ ନାହିଁ । ମୁଁ ସେ ଅଗ୍ନି ପ୍ରବାହକୁ ଧାରଣ କରେ, ଧାରଣ ନକରିବାର ଉପାୟ ନାହିଁ । ସେ ହିଁ ମୋତେ ଯନ୍ତ୍ରବତ୍ ଚାଳିତ କରେ । ଏପରି ଏକ ଅଦ୍ଭୁତ ସାନ୍ନିଧ୍ୟରେ ମୁଁ ନାସ୍ତିକ ହେବା କ'ଣ ସମ୍ଭବ? ମୁଁ ଆପଣଙ୍କର ଦେବତା ମନ୍ଦିରକୁ ଅବିଶ୍ୱାସ କରେନାହିଁ; ଅବମାନନା କରିବା ମୋର ଧର୍ମ ନୁହେଁ । ମୁଁ ବରଂ ତା'ର ପରିସର ଯଥେଷ୍ଟ ବିସ୍ତୃତ କରିନିଏ । ଏ ଦିଗନ୍ତ ହୋଇଯାଏ ତା'ର ସୀମା, ଆକାଶ ହୋଇଯାଏ ତା'ର ଶୀର୍ଷ । ହେ ମୋର ଦେଶବାସୀ, ମୁଁ ତୁମକୁ କେଉଁ ଭାଷାରେ ବୁଝାଇବି ଯେ ମୋର ଆଚରଣ ତୁମ ଭଳି ନହେଲେ ସୁଦ୍ଧା ମୁଁ ନାସ୍ତିକ ନୁହେଁ; ସେ ସବୁ ବୁଝାଇବାକୁ ଏଠି ମୋର ଅବସର କାହିଁ ?

ଆପଣମାନେ ହୁଏତ ଭାବୁଥିବେ ଯେ, ଆପଣଙ୍କଠାରୁ ଏତେ ଭିନ୍ନ ମତ ପୋଷଣ କରି ସକ୍ରେଟିସ୍ ଅତଏବ ନିଶ୍ଚୟ ଦେଶଦ୍ରୋହୀ । ଏ ବିପୁଳ ସଂଖ୍ୟକ ନାଗରିକ ହିଁ ତ ଦେଶର ପ୍ରତୀକ ସେମାନଙ୍କ ସ୍ୱାର୍ଥ ଦେଶର ସ୍ୱାର୍ଥ, ସେମାନଙ୍କର ମତ ଦେଶର ମତ । ଏଣୁ ସେମାନଙ୍କର ଦ୍ରୋହାଚରଣ ଅବଶ୍ୟ ଦେଶଦ୍ରୋହ ହେବା ଯୁକ୍ତିସମ୍ମତ । କିନ୍ତୁ ତାହା ନୁହେଁ । ମନ ପ୍ରାଣରେ ସତ୍ୟର ଅକୂପାର ଭାର ବହନ କଲା ପରେ ଆଉ କୌଣସି ଆବେଗ ପାଇଁ ଜୀବନରେ ଅବକାଶ ନଥାଏ । ସମୁଦ୍ରର ସନ୍ଧାନରେ ବୋହିଯାଉଥିବା ନଦୀ କୂଳର ଦ୍ରୋହାଚରଣ କରେ ନାହିଁ । ତାକୁ ସମୟ ନଥାଏ ଆଖି ଟେକି ଉଭୟ ପାର୍ଶ୍ୱକୁ ଚାହିଁ ଦେବାକୁ । ସେ ଗୋଟିଏ ମାତ୍ର ଭାବନାରେ ତଲ୍ଲୀନ ଥାଏ । ତା'ର ସେ ସ୍ୱାଭାବିକ ପ୍ରବେଗରେ, ଅନିଚ୍ଛାକୃତ ତାଡ଼ନରେ ଯଦି କୂଳରୁ କିଛି ଧସି ଗଲା, ସେଥିପାଇଁ ତା'ର ଆୟତ୍ତ କ'ଣ? ଦ୍ରୋହାଚରଣ ମୋ ଚରିତ୍ରର ଅସମ୍ଭବ ବିରୋଧ । ମୁଁ ଆପଣଙ୍କର କିମ୍ବା କୌଣସି ଦେଶର ଦ୍ରୋହ କରି ପାରିବି ନାହିଁ । ଯା' ବାହାରେ ଆପଣମାନେ ଏ ଦେଶର ନାଗରିକ ହେଲେ ମଧ୍ୟ କେତୋଟି ଯୁଗଚାରୀ ବିନ୍ଦୁ ମାତ୍ର। ଆପଣଙ୍କୁ ପ୍ରତି ମୁହୂର୍ତ୍ତରେ ଦେଶ ପରିହାର କରି ନୂତନକୁ ଗ୍ରହଣ କରୁଛି । ଆପଣ ଓ ଦେଶର ଯୁଗଯୁଗବ୍ୟାପୀ ପ୍ରସାରିତ

ବ୍ୟକ୍ତିତ୍ୱ ସହିତ ସମ-ପରିମିତ ନୁହଁତି । ତା'ର ଅବିଚଳିତ ଆତ୍ମା ସହିତ ପରିଚିତ ନୁହଁତି । ଯାହା ସତ୍ୟ, ତାହା ଚିରକାଳ ସତ୍ୟ । ଆପଣ ସାମୟିକ ଆବେଗର ବଶବର୍ତ୍ତୀ । ଏଣୁ ଦେଶପ୍ରେମର ଯେତେ ଅଭିନୟ କଲେ ସୁଦ୍ଧା ଆପଣ ପ୍ରକୃତରେ ସ୍ୱାର୍ଥପର । ନିଜର ଭୋଗବିଳାସ ପାଇଁ ପରୋକ୍ଷରେ ଦେଶର ସମ୍ପତ୍ତିକୁ ଆପଣ ବିନିଯୋଗ କରନ୍ତି । ନିଜର ସ୍ୱାଚ୍ଛନ୍ଦ୍ୟ ପାଇଁ ଆପଣ ଦେଶକୁ ବିକ୍ରି କରିଦେଇପାରନ୍ତି ଏବଂ ଜାଣିପାରନ୍ତି ନାହିଁ ଦେଶକୁ ବିକ୍ରି କଲେ ବୋଲି । ମୁଁ କିନ୍ତୁ ଆପଣଙ୍କର ଅନ୍ଧ ସ୍ତାବକ ନୁହେଁ । ଏଣୁ ଆପଣଙ୍କ ଅନୁଗାମୀ ନ ହେବା ସ୍ୱାଭାବିକ । ମୁଁ ଦେଶର ତ୍ରିକାଳ-ଦ୍ରଷ୍ଟା; ତା'ର ଶ୍ରେୟ ସାଧନ ପାଇଁ ମୁଁ ଯଥା ସମ୍ଭବ ତତ୍ପର । ମୋର ସ୍ୱାର୍ଥ ପାଇଁ ମୁଁ କେବେ. ଚିନ୍ତା କରି ନାହିଁ । ଏଣୁ ଆପଣଙ୍କ ସହିତ ମୋର ଧର୍ମର ବିରୋଧ ନିଶ୍ଚୟ ରହିଛି । କିନ୍ତୁ ଦେଶଦ୍ରୋହର ମାତ୍ରା କେଉଁ ପକ୍ଷରେ କେତେ, ତାହା ସ୍ଥିର ମନରେ ବିଚାର କରନ୍ତୁ ।

ଆପଣଙ୍କ ପ୍ରତିକ୍ରିୟାରୁ ମୁଁ ବୁଝିପାରୁଛି ଯେ, ଏ ନ୍ୟାୟାଳୟରେ ଥାଇ ସୁଦ୍ଧା ମୋର ଆଚରଣ ଆପଣଙ୍କର ଆଶାନୁରୂପ ହୋଇପାରୁନାହିଁ । ମୁଁ ସେଥିପାଇଁ ନାଚାର । ମୁଁ ଜାଣେ ଯେ ଆପଣଙ୍କୁ ପ୍ରୀତ କରି ନ ପାରିଲେ ଆପଣ ମୋତେ ହତ୍ୟା କରିପାରନ୍ତି । କରନ୍ତୁ । ଏ ବୟସରେ ମୃତ୍ୟୁକୁ ମୁଁ ସବୁବେଳେ ମୋ ସମ୍ମୁଖରେ ସ୍ଥାପିତ କରିଛି । ଏଣୁ ତାକୁ ଡରିବା ସମ୍ଭବ ନୁହେଁ । ମୋ ପରିସ୍ଥିତିରେ ଆହୁରି ଅନେକ ବୃଦ୍ଧ ନତଜାନୁ ଆପଣଙ୍କୁ ପ୍ରାଣ ଭିକ୍ଷା କରିଛନ୍ତି । ସେମାନଙ୍କର ପୁତ୍ରକଳତ୍ରକୁ ଡକାଇ ସେମାନଙ୍କ ଅଶ୍ରୁ ଜରିଆରେ ସହାନୁଭୂତି ଭିକ୍ଷା କରିଛନ୍ତି । ମୁଁ ସେଭଳି କରୁନାହିଁ ବୋଲି ଆପଣ ଆହୁରି ଆହତ ଅନୁଭବ କରୁଛନ୍ତି । ମୁଁ କ'ଣ ତା'ହେଲେ ମଣିଷ ନୁହେଁ ? ମୁଁ ସ୍ୱୀକାର କରୁଛି, ଧର୍ମାବତାର, ମୁଁ କାଠ ନୁହେଁ କିମ୍ବା ପଥର ନୁହେଁ । ରକ୍ତ-ମାଂସ କ୍ଷୁଧା-ତୃଷାର ମୁଁ ବି ଏକ ମଣିଷ । ମୋର ପରିବାର ଅଛି, ପତ୍ନୀ ଅଛି, ନାବାଳକ ସନ୍ତାନ ଅଛନ୍ତି କିନ୍ତୁ ସେମାନଙ୍କୁ ଆଣି ଆପଣଙ୍କୁ ଖୋସାମତ କରିପାରୁନାହିଁ ବୋଲି ଏ ବୃଦ୍ଧ ଆପଣଙ୍କ ପାଇଁ ଦୁଃଖ ପ୍ରକାଶ କରୁଛି । ସେପରି କରିବାଦ୍ୱାରା ସମସ୍ତଙ୍କର ମର୍ଯ୍ୟାଦା ହାନି ହେବାର ଆଶଙ୍କା ରହିଛି । ସାମାନ୍ୟ ଆଉ କେତୋଟା ଦିନ ପକାଶେ ଜୀବନ ଭିକ୍ଷା କରି ମୁଁ ମୋର ଆତ୍ମାକୁ ଅବନମିତ କରିପାରୁନାହିଁ । ଆପଣ ନ୍ୟାୟର ଆସନରେ ବସିଥିବା ପର୍ଯ୍ୟନ୍ତ କୌଣସି ଦୁର୍ବଳ ବିନ୍ଦୁରେ ଆପଣଙ୍କୁ ପ୍ରଭାବିତ କରି ନ୍ୟାୟ-

ଈଶ୍ୱର ଅବମାନନା କରିପାରୁନାହିଁ । ମୋତେ ଯେହେତୁ ଆପଣମାନେ ସର୍ବ-ସମ୍ମତିକ୍ରମେ ଏକ ଅସାଧାରଣ ବ୍ୟକ୍ତି ବୋଲି ଆଖ୍ୟାତ କରିସାରିଛନ୍ତି, ଅନ୍ୟ ଦେଶର ଲୋକଙ୍କୁ ମୁଁ ସୁଯୋଗ ଦେଇପାରୁନାହିଁ, ମୋର କ୍ଲୀବତାର ଦୃଷ୍ଟାନ୍ତ ଦେଇ ସେମାନେ ଏ ଦେଶଟାକୁ ଉପହାସ କରନ୍ତୁ ।

କିନ୍ତୁ ହେ ସମାଜର ସଚ୍ଚରିତ୍ରପୁରୋଧାଗଣ, ମୁଁ ତଥାପି କହିବି ଯେ ଆପଣ ଏଥିରୁ ନିବୃତ୍ତ ହୁଅନ୍ତୁ । ମିଥ୍ୟା ଅସୂୟାର ବଶବର୍ତ୍ତୀ ହୋଇ ଆପଣମାନେ ମୋତେ ହତ୍ୟା କରନ୍ତୁ ନାହିଁ । କାରଣ ମୁଁ ମରିଗଲେ ମୋ ଭଳି ଆଉ ଜଣକୁ ଆପଣ ଆଉ ପାଇବେ ନାହିଁ । ମାଲିକର ନିର୍ଦ୍ଦେଶରେ ତାଉଁଶ ଭଳି ଆପଣଙ୍କୁ ଲାହୁଡ଼ ମାରି ବାରମ୍ବାର ଜାଗ୍ରତ ରଖିବା ଥିଲା ମୋର ଅସା-ଧାରଣ ଭୂମିକା । ମୁଁ ଚାଲିଗଲେ ଆପଣମାନେ ଶୋଇଯିବେ ; ନିଶ୍ଚେତନ, ସ୍ଥବିର ହୋଇଯିବେ । ଆପଣଙ୍କ ପାଇଁ ଆପଣଙ୍କର ଅସଂଖ୍ୟ ବଂଶଧର ଅନନ୍ତୁଷ୍ଟ ନ ହୁଅନ୍ତୁ । ଆପଣଙ୍କ ଆଚରଣରେ ଦେଶ ଲଜ୍ଜିତ, କଳଙ୍କିତ ନ ହେଉ । ସାଧୁର ରକ୍ତପାତ କରି ଆପଣ କଳଙ୍କିତ ନ ହୁଅନ୍ତୁ । ଏଥିପାଇଁ କେବଳ ଆପଣଙ୍କୁ ସତର୍କ କରିଦେବା ଉଚିତ ମନେକଲି । ଏଣିକି ଆପଣ ଇଚ୍ଛାନୁରୂପ ବିଚାର କରିପାରନ୍ତି । ମୋର ଆଉ କିଛି କହିବାର ନାହିଁ ।

୦୦୦

ଆପଣଙ୍କ ବିଚାରରେ ମୁଁ ଆଦୌ ବିସ୍ମିତ ନୁହେଁ । ମୁଁ ପ୍ରତ୍ୟେକ ଆଖିରେ ଏହାର ପ୍ରତିଫଳନ ଅନେକ ଦେଳୁ ଲକ୍ଷ୍ୟ କରି ସାରିଥିଲି । ଏଣୁ ପ୍ରାଣଦଣ୍ଡର ନିଷ୍ପତ୍ତି ପାଇଁ ମୁଁ ପ୍ରାୟ ପ୍ରସ୍ତୁତ ଥିଲି । ତାହାହିଁ ହେଲା । କିନ୍ତୁ ଏହା ପରେ କାହିଁକି ପୁଣି ଦରଖାସ୍ତ କରିବାକୁ ମୋତେ ଅନୁମତି ଦେଉଛନ୍ତି? ଆପଣ କ'ଣ ତଥାପି ଆଶା କରୁଛନ୍ତି ଯେ ମୁଁ ମୃତ୍ୟୁଭୟରେ ଆଜୀବନ କାରାଦଣ୍ଡ ବା ଦ୍ୱୀପାନ୍ତର ପାଇଁ ପ୍ରାର୍ଥନା କରିବି, କିମ୍ବା କିଛି ଅର୍ଥଦଣ୍ଡ ବିନିମୟ-ରେ ମୋତେ ଖଲାସ କରାଯାଉ ବୋଲି ଅର୍ଜି କରିବି? ଏଭଳି ଚିନ୍ତା କରିବାକୁ ହିଁ ମୋତେ ଭାରି କୌତୁକ ଲାଗୁଛି । ଧରାଯାଉ ଅର୍ଥଦଣ୍ଡ । ଆପଣ କ'ଣ ମୋର ଅବସ୍ଥା ଅନୁପାତରେ ତାକୁ ହ୍ରାସ କରିପାରିବେ? ମୋ ପାଖରେ ବର୍ତ୍ତମାନ ମାତ୍ର ତିନୋଟି ପଇସା ଅଛି । କିନ୍ତୁ ମୋ ବିରୁଦ୍ଧରେ ଯାଇଥିବା ତେତିଶଟି ମତକୁ ଅନ୍ତତଃ ଗୋଟିକୁ ପଇସାଟିଏ ଦରରେ କ୍ରୟ କଲେ ଆଉ ତିରିଶ ପଇସା ନିଅଣ୍ଟ ହୋଇଯାଉଛି । ଏଠି ମୋର ପରିଚିତ ଅନେକ ଚେଜୀୟାନ୍ ତରୁଣ ସବୁ ବସିଛନ୍ତି । ଆପଣ କହନ୍ତି ଯେ ସେମାନେ

ମୋର ଶିଷ୍ୟ । କଣ କହୁଛୁ—ପ୍ଲାଟୋ, କ୍ରିଟୋ, ପଦ୍ମପାଦ, ସୁରେଶ୍ୱର, ବିବେକାନନ୍ଦ' ! ମାତ୍ର ତିରିଶଟି ପଇସା ପାଇଁ ଅଙ୍ଗୀକାର ଦେଇ ପାରିବ? ତେତିଶଟି ପଇସା ଦେଇ ତୁମ 'ଗୁରୁ'ର ପ୍ରାଣ ଭିକ୍ଷା କରିବିଁ କହୁଛୁ?

ହେ ମୋର ଦେଶବାସୀ, ମୁଁ ତୁମକୁ କେଉଁ ଭାଷାରେ କହିବି ଏବଂ କିପରି ବିଶ୍ୱାସ କରାଇପାରିବି ଯେ ମୁଁ ଦଣ୍ଡିତ ହୋଇପାରେନା । ଦଣ୍ଡ ଦେବାକୁ ଏତେ ବ୍ୟଗ୍ର, ଉତ୍କଣ୍ଠିତ ଏ ଦେଶରେ ସମୟ ବା କାହିଁ ଏତେ ବଡ଼ ସମସ୍ୟାର ଉପଯୁକ୍ତ ବିଚାର କରିବାକୁ? ଏତିକି ମାତ୍ର ଅବକାଶ ଭିତରେ ମୁଁ କିପରି ବିଶାଳତମ ସତ୍ୟର ସପକ୍ଷରେ ବୟାନ ଦେଇ ଆପଣଙ୍କୁ କହିବି ଯେ ମୋର ମୃତ୍ୟୁ ନାହିଁ ଏବଂ ଆପଣ ଯାହା କରୁଛନ୍ତି ତାହା ଭୁଲ କରୁଛନ୍ତି? ଏଣୁ ଏ ନ୍ୟାୟାଳୟରେ ଆକଣ୍ଠ ବିଷ ପାନ କଲା ପରେ କାଲି ସକାଳୁ ଆଉ ଗୋଟିଏ ମାତ୍ର ପିଆଲା ବିଷ ପିଇବାକୁ ମୋର ଆଦୌ କୁଣ୍ଠା ନାହିଁ । ସେଥିରେ ଚିର ଅବିଚଳିତ ସତ୍ୟ ଅବିଚଳିତ ହିଁ ରହିବ ।

ଚରମ ବିଦାୟର ମୁହୂର୍ତ୍ତ ଆସିଗଲା । ଏଣିକି ଆମେ ନିଜ ନିଜ ପନ୍ଥାରେ ଚାଲିଯିବା । ମୁଁ ଯିବି 'ମରିବାକୁ' ଏବଂ ଆପଣ ଯିବେ 'ବଞ୍ଚିବାକୁ' ଏଥିରୁ କେଉଁଟା ଶ୍ରେୟସ୍କର, ହୁଏତ କେହି କହିପାରିବେ ନାହିଁ ।



## ଖର୍ବପୁରୁଷ

ଏ ବାମନ ରାଜ୍ୟରେ ଜନ୍ମ ଏକ ଅପହଂଚ ସ୍ୱପ୍ନ । ବାଇଗଣ ଗଛକୁ ଆଂକୁଡ଼ି ଲଗାଉଥିବା ଖର୍ବ ମଣିଷର ପାଇଁ ଉଚ ଉଚ ଆକାଶର ସମ୍ଭାବନା ନାହିଁ । ଛୋଟ ମନ, ଛୋଟ ପ୍ରାଣ, ଛୋଟ ଛୋଟ ହାତଗୋଡ଼ ନେଇ ସେମାନେ ଗୋଟିଏ ଅପ୍ରସାରିତ ଜଗତରେ ବଂଚିଥାଂତି । ସେମାନଙ୍କର ସୁଖ ଦୁଃଖ ସଂଘର୍ଷ-ରେ ମଧ୍ୟ କୌଣସି ବିସ୍ତାର ନାହିଁ । ଏପରିକି ଦୁରାସଦ କାମକ୍ରୋଧମାନେ ମଧ୍ୟ ସେମାନଙ୍କର କୃପଣ ଜୀବନରେ ଅତି ଦୀନହୀନ ଭାବରେ ପ୍ରକଟିତ ହୁଅଂତି । କୁଣ୍ଠିତ, ସଙ୍କୁଚିତ, ଦରିଦ୍ର, ଉଦ୍ଧାର୍ଦ୍ଧ ଜୀବଗୁଡ଼ିଏ ଏମାନେ । ସ୍ପର୍ଦ୍ଧା ନାହିଁ, ସ୍ୱାଭିମାନ ନାହିଁ, ବିଭବ, ବିଭୂତି କିଂବା ଐଶ୍ୱର୍ଯ୍ୟ କିଛି ନାହିଁ । ପାଣି-କେଂଚୁଆ ଭଳି ସାମାନ୍ୟ ବାଧା ପାଖରୁ ସାଂକୁଡ଼ି ଯାଇ କୌଣସି ପ୍ରକାରେ ବଂଚିରହିବା ହିଁ ଜୀବନ । ଯଦି ହିମାଳୟକୁ ଲଂଘିଯିବାର ଅଭିପ୍ସା ମୋ ଭିତରୁ ଲିଭିଯାଇଛି, ଯଦି ସଂଧ୍ୟରାରେ ଲାତଖାଇ ମୁଁ ଅବିଚଳିତ ରହିପାରୁଛି, ତେବେ ମୋ ଭିତରେ ଦୟାକରି ସେ ଅହିରାଜକୁ ଖୋଜଂତୁ ନାହିଁ, ଯା' ଲାଂଗୁଳରେ ପବନ ବାଜିଗଲେ ସେ ମଣିମଣ୍ଡିତ ଫଣା ଟେକି ଯୁଦ୍ଧ ଘୋଷଣା କରେ । ମୁଁ ଏକ ଚିରପରାସ୍ତ, ଅତି ଦୁର୍ବଳ, ବେଲଜ୍ଜ, ଅମେରୁଦଂଡୀ ପ୍ରାଣୀ, ଯେ ମୁକାବିଲା କରି ଶିଖି ନାଇଁ, ସାମ୍ନାସାମ୍ନି ଦେଖିନାହିଁ ସମସ୍ୟାକୁ, ସଂକଟକୁ ବା ଶତ୍ରୁକୁ । ବଂଚିବାକୁ ଜାବଡ଼ି ଧରି ବଂଚିବାର ସକଳ ସମ୍ମାନ ଏବଂ ସମ୍ଭ୍ରମ ମୁଁ ହରେଇସାରିଛି । ସଂକୀର୍ଣ୍ଣ, କୃପଣ, ମ୍ରିୟମାଣ ଏ ବାମନ ରାଜ୍ୟରେ ମୁଁ ଏକ ବାମନ ପ୍ରତିନିଧି, ମୋର ଇତିବୃତ୍ତ କ୍ଷୁଦ୍ର ।

ଏକୁଟିଆ ବଂଚିବାକୁ ସାମର୍ଥ୍ୟ ନ ଥିବାରୁ ମୁଁ ଏକାଠି ବଂଚେ । ଏକାଠି ବଂଚିଲେ ପ୍ରେମ କରିବାକୁ ପଡ଼େ, ଘୃଣା କରିବାକୁ ପଡ଼େ କିଂତୁ ମୋର ଉଦା-ରତା ନାହିଁ । ମୁଁ ତ୍ୟାଗ କରିପାରେନାହିଁ, ଉତ୍ସର୍ଗ କରିବା ମୋର ସ୍ୱଭାବ ନୁହେଁ । ମୋତେ ହିଁ ଜାବଡ଼ି ଧରି ମୁଁ ସଂଠି ବାଂଧିଯାଇଛି । ଏଣୁ ପାଖ ପଡ଼ୋଶୀକୁ ମୁଁ କେବଳ ସହିଯାଏ । ସହଯାତ୍ରୀଟିକୁ ଅଗତ୍ୟା ସ୍ୱୀକାର କରେ ପ୍ରେମ କରିପାରେ ନା, ମୁଁ ପ୍ରେମକୁ ଚୋରିକରେ । ପ୍ରେମକୁ ପାପଜଡ଼ିତ କରେ । ପ୍ରେମ ପାଇଁ ଲଜ୍ଜିତ ହୁଏ । ବାପ ମା'ଙ୍କୁ ଭଲପାଏନା, ସେମାନଙ୍କର ମୃତ୍ୟୁ କାମନା କରେ । ମୁଁ କୃତଘ୍ନ ନୁହେଁ । ମୋର ପତ୍ନୀ କୌଣସି ସ୍ୱାଦିଷ୍ଟ ଫଳ ପରି—ମୁଁ ତାକୁ ଖାଏ । ସେ ଏକ ଗାଈ ପରି—ମୁଁ ତାକୁ ଦୋହନ କରେ । ମୋର ପୁତ୍ର କନ୍ୟା ମୋର ଦାୟିତ୍ୱ । ତାଂକର ପ୍ରତିପୋଷଣ ମୋର

ସାମାଜିକ କର୍ତ୍ତବ୍ୟ । ସେଥିରେ ଅବହେଳା କଲେ ମୁଁ କୁଣ୍ଠିତ ନୁହେଁ । ମୋର ଉପାର୍ଜନ ମୁଁ ମୋ ପରିବାର ପାଇଁ ବାଂଟି ଦିଏ । ଶୋଇବା ପାଇଁ ମୋ ଘରର ପ୍ରକୋଷ୍ଠ ବାଂଟିଦିଏ । ମୁଁ ଏମାନଙ୍କୁ ଭଯ଼କରେ, ଅନ୍ୟମାନଙ୍କୁ ଭଯ଼ କରେ, ପ୍ରେମ କରିପାରେ ନା । ପ୍ରେମ ଏକ ଅବାଧ ବନ୍ୟା । ତା'ର ପ୍ଳାବନ ପାଇଁ ମୋ ଗର୍ଭରେ ବିସ୍ତାର ନାହିଁ । ଘୃଣା ପାଇଁ ମଧ୍ୟ ମୁଁ ସମର୍ଥ ନୁହେଁ । ମୁଁ କେବଳ ଲୁଚି ଲୁଚି ନିଭୃତରେ ଘୃଣା କରିପାରେ । ଅନ୍ୟକୁ ଘୃଣା କଲେ ମୁଁ ନିଜକୁ ଭଲପାଏ—ସେଥିପାଇଁ ମୁଁ ଘୃଣାକରେ । ଘୃଣା ଏକ ବହ୍ନ, ଏକ ତରଳ ଅଗ୍ନି । ପରିପୂର୍ଣ୍ଣ ଘୃଣା କ୍ରୋଧରେ ଫାଟିପଡ଼େ । କ୍ରୋଧ ଏକ ସାହସିକ ସାମର୍ଥ୍ୟ—ମୋର ସାହସ ନାହିଁ । ମୋର ପୌରୁଷ ନାହିଁ । ମୁଁ ବାମନ । ମୁଁ କ୍ଷୁଦ୍ର ପୁରୁଷ ।

ନିରାପଦରାକୁ ମୁଁ ସବୁଠାରୁ ବେଶି ମୂଲ୍ୟ ଦିଏ । ଏଣୁ ସୋଡ଼ ଫରକଟେଲ ମୋ ସାମ୍ନାରେ ଠିଆହୋଇଥିବା ଲେଲେହୋଲକୁ ମୁଁ ଆଡ଼େଇହୋଇ ଖସିଯାଏ । ତା ପଛୁଆଡଳେ ଚଲିଯାଏ । ସହର ବର୍ତ୍ତୀ ଉପରେ ଅନେକ ଦୃଷ୍ଟି, ଅନେକ ଆଲୋକ । ମୁଁ ତେଣୁ ପଛୁବାଟେ ପଶିଯାଏ । ମୋ ମାଷ୍ଟୁନା ମହୁଁରେ ମୁଁ ନିଶ ଗଜୁରିବାକୁ ଦିଏନାହିଁ । ଠିଆନିଶର ଦାୟିତ୍ୱ ତୁଲେଇବାକୁ ମୁଁ ଅକ୍ଷମ । ନେଇଆଣି ଥୋଇ ଜାଣିବା ବିଦ୍ୟା ମୋତେ ଖୁବ୍ ପୋଷାଏ । ମୋତେ ବିଶ୍ୱାସକଲେ ମୁଁ ସେଇ ବିଶ୍ୱାସର ସୁଯୋଗ ନିଏ । ଠକି ପାରିବା ମୋର ଯୋଗ୍ୟତା । ବାଲି, ଉପତ୍ରିକୁ ରାସ୍ତାରେ ନ ପକାଇ ମୋ କୋଠାରେ ନେଇ ଲଗେଇଦିଏ । ଦଶ୍ ଦେଲି ବୋଲି କହି ପାଂଚ୍ ଖାଇଯାଏ । ମୋ ରାଜ୍ୟରେ ସମସ୍ତେ ମିଛ କହନ୍ତି । ମିଛ କହିପାରିବା ଚତୁରତା । ସମସ୍ତେ ଚୋରିକରନ୍ତି । ଚୋରିକରିବା ସାମର୍ଥ୍ୟ । 'ଖଡ଼ାବଡ଼ି ଥୋଡ଼' ଯଦି ଅଛି, ମୁଁ ତାକୁ 'ଥୋଡ଼ବଡ଼ି ଖଡ଼ା' କରିଦିଏ । ମୋତେ ଆପଣ ଡିଲିଟ୍ ଉପାଧି ଦିଅନ୍ତି । ଆପଣ ବି ସେଇଆ କରିଛନ୍ତି । ମୋ ଦେଶର ପାଂଚଲକ୍ଷ ଗବେଷଣାର ତଷ୍ଟୁ ପର୍ବତଭିତରେ ଗୋଟିଏ ଦାନା ବହୁ କଷ୍ଟରେ ଦେଖାଦିଏ । ସି.ଭି.ରମନ ଏକ ବ୍ୟତିକ୍ରମ । କାହିଁକି ସେ ଭଳି ମଣିଷଟି ଏ ଖର୍ବ ରାଜ୍ୟରେ ଜନ୍ମୁଥିଲା?

—

ମୋ ଦେଶର ସବୁଠୁ ବୃହତ୍ତମ ଲେଖକଗୋଷ୍ଠୀ ଦପ୍ତର କିରାଣୀ । ଶଠତା ଆମ ବୃତ୍ତି । ଆମେ ପରସ୍ପରକୁ ଚୋରିକରୁ । ପରସ୍ପରକୁ ଈର୍ଷାକରୁ, ନିନ୍ଦାକରୁ, ହୁଏତ ପହାର କରୁ । ଆମେ ରକ୍ତରେ ଖେଳିବାକୁ ଘୋଷଣା କରୁ ଖେଳୁ

କାହୁଅରେ—ରକ୍ତପାଇଁ ସାହସ ନାହିଁ । ଆମେ ବଞ୍ଚୁ ଆଂଶିକ ଭାବରେ ଏଣୁ ପ୍ରାଣ ଦେଇ ଦେଖିପାରୁନା, ପ୍ରାଣ ଦେଇ ଲେଖିପାରୁନା । ମୁଁ ବି ଲେଖି-ପାରେନା । ମୋ ଭାଷାରେ ପ୍ରାଣ ନାହିଁ, ଶବ୍ଦରେ ଅଗ୍ନି ନାହିଁ । ବାକ୍‌ରେ ମୁଁ ପ୍ରାଣକୁ ହୃବନ କରିପାରୁ ନାହିଁ । ମୋ ଚେତନା ଅବରୁଦ୍ଧ । ମୋର ଅନୁଭବ ସଙ୍କୀର୍ଣ୍ଣ । ମୋର ଆବେଗ କୁଣ୍ଠିତ । ମୋର ଅବୟବ ଅପ୍ରସାରିତ । ମୋର ବେଦନା ନାହିଁ, କ୍ଷତ ନାହିଁ ; ଅଶ୍ରୁକ୍ଷରଣ ନାହିଁ, ରକ୍ତ କ୍ଷରଣ ନାହିଁ । ଏ ସବୁର ଚିହ୍ନମାତ୍ର ମୋ ପାଇଁ ଯଥେଷ୍ଟ । ମୁଁ କ୍ଳୀବ, ମୁଁ ଅର୍ଦ୍ଧମଣିଷ ।

ମୋର କାମନାଗୁଡ଼ିକ ପଙ୍ଗୁ । ମୋ କ୍ଷୁଧା ପାଖରେ ମୁଁ ପ୍ରଥମେ ବଳି ପଡ଼ି-ଯାଏ । ତା'ର ଶିଖା ଚହଟିବାକୁ ଦିଏନାହିଁ । ମହାର୍ଘ ଆହାର ଦେଖି ଲାଳାୟିତ ହୁଏ । ଭୋଜନକୁ ଜିହ୍ୱାଲାଳସା କହି ଉପେକ୍ଷା କରେ । ମନୋରମା ନାରୀକୁ ଲୁଚି ଲୁଚି ଦେଖେ । ମନରେ ସମ୍ଭୋଗ କରେ, ସ୍ପର୍ଶ କରେନା ରମ୍ଭା, ଉର୍ବଶୀ ମୋର କାମ୍ୟା ନୁହଁନ୍ତି । କାଶ୍ମୀର ଘୋଟକୀ ପରି ସୁରମ୍ୟା ରମଣୀ ମୋର ସଙ୍ଗ କାମନା କଲେ ମୁଁ ମୂର୍ଚ୍ଛିତ ହୋଇଯିବି । ସେହିପରି ବିସ୍ତୃତ ହେମଜଡ଼ିତ ହର୍ମ୍ୟ ମୋର ଆବାଞ୍ଛ୍ୟ ନୁହେଁ । ମୁଁ ତା'ର ତ୍ରିସୀମା ସ୍ପର୍ଶ କରେନାହିଁ । ମୋ ଖର୍ବିତ ଅଙ୍ଗ ପରାସ୍ତ ହୁଏ । ଯେ କୌଣସି ଐଶ୍ୱର୍ଯ୍ୟ ମୋତେ ତ୍ରାସିତ କରେ । ଅନର୍ଘ ମଣିମୁକୁଟ ପାଇଁ ମୋର ମାନଗୋବିନ୍ଦ ମୂର୍ଚ୍ଛା ନାହିଁ । ସମୁଦ୍ରକୁ ଦେଖିଲେ, ମୁଁ ଖର୍ବମଣିଷ, ଆଖି ନୁଆଇଁ ଆଣେ । ଆରପାରିକୁ ଯାଇ ମୁକ୍ତା ଆଣିବାକୁ ମୁଁ ମନ ବଳାଏ ନାହିଁ । ଢେଉ ମୋ ସଙ୍ଗେ ଖେଳିବାକୁ ଗୋଡ଼ାଇ ଆସିଲେ ମୁଁ ସନ୍ତ୍ରସ୍ତ ହୋଇ ଧାଇଁ ପଳାଏ । ବିସ୍ତୃତ ସମୁଦ୍ର ମୋର ବିପରୀତଧର୍ମୀ । ସମୁଦ୍ର ମୋର ଶତ୍ରୁ । ମୁଁ ଗୋଷ୍ପଦର ମଣିଷ । ସମୁଦ୍ର ଲଙ୍ଘନ ମୋ ପାଇଁ ଅବାନ୍ତର । ସେହିପରି ହିମାଳୟ ମୋର ଶତ୍ରୁ । ସେ ମୋତେ ଉପହାସ କରେ । ଗୁଡ଼ାଏ ଉଦ୍‌ଭଟ ବିଶାଳ ବନସ୍ପତି ମୋର ଭୟ ସଞ୍ଚାର କରନ୍ତି । ମୁଁ ଗଳୁ-ରାଜ୍ୟର ମଣିଷ । ମୁଁ ଅଭିମାନ କରେନାହିଁ, କରିପାରେ ନାହିଁ । ନୂତନକୁ ମୁଁ ଡରେ । ତା'ର ସହସା ସଂଘାତ ପାଇଁ ମୁଁ କଦାପି ପ୍ରସ୍ତୁତ ନୁହେଁ । ମୁଁ କାହିଁକି ଚନ୍ଦ୍ରରେ ଅବତରଣ କରିବି? କାହିଁକି ଗ୍ରହ ନକ୍ଷତ୍ରର କଳନା କରିବି? କାହିଁକି ଆପେକ୍ଷିକତତ୍ତ୍ୱ ଉଦ୍‌ଭାବନ କରିବି? ମୋର ଅଭିଳାଷ ସଙ୍କୁଚିତ । ମୁଁ ଶ୍ରମ-କାତର ଭୟାର୍ତ୍ତ ମଣିଷ । ମୁଁ ସମ୍ରାଟକୁ ଭୟକରେ । ସାମ୍ରାଜ୍ୟକୁ ଭୟକରେ । ଜ୍ଞାନୀକୁ ଭୟକରେ, ଜ୍ଞାନକୁ ଭୟ କରେ । କର୍ମଫଳର ଆଶଙ୍କା ମୋତେ

ବିବ୍ରତ କରେ । କର୍ମ ବିବ୍ରତ କରେ । କର୍ମରୁ ବିରତ ହୋଇ ମୁଁ ଆଳସ୍ୟକୁ ଲେସେଡ଼ିଯାଏ । ମୋର ଆଳସ୍ୟ ନିଦ୍ରାଜଡ଼ିତ । ନିଦ୍ରା ସ୍ୱପ୍ନ-ଦଷ୍ଟ । ମୃତ୍ୟୁ-ଭୟ ମୋ ଜୀବନରେ ଏକମାତ୍ର ଆବେଗ, ମୋର ଗରିଷ୍ଠ ଉପାଦାନ, ମୋର ବିଡ଼ମ୍ବନା ।

ମୁଁ ଅହିଂସ୍ର ନୁହେଁ, ଦୁର୍ବଳ । ଦୁର୍ବଳ ନୁହେଁ, ଭୀରୁ । ମୁଁ ହିଂସ୍ର ହେବାପାଇଁ ଯଥେଷ୍ଟ କ୍ରୁଦ୍ଧ ହୋଇପାରେନା । କ୍ରୁଦ୍ଧ ହେବାପାଇଁ ଯଥେଷ୍ଟ ଅପମାନିତ ହୋଇ ପାରେନା । ମୋର କ୍ରୋଧ, ହିଂସା, ଅପମାନ ସବୁ ଅସଫଳ । ମୁଁ ଶତ୍ରୁକୁ ମୁକାବିଲା କରିପାରେ ନାହିଁ । ତାର କବରକୁ ଆଣି କୁଣବିଷକରେ । ମୁଁ ପରାସ୍ତ କରିବାକୁ ଚାହେଁ, ଜିଣିବାକୁ ଚାହେଁନା—ନିଃସଙ୍କୋଚ ପ୍ରଭୁତ୍ୱ ପାଇଁ ମୋର ଯୋଗ୍ୟତା ନାହିଁ, ଏଣୁ ନିଜକୁ ଏବଂ ନିଜର ବାମନ ପରିବାରକୁ ମୁଁ ମର୍ଦ୍ଦିତକରେ, ହୁଏତ ହତ୍ୟାକରେ । ସେ ଦୀର୍ଘମଣିଷମାନଙ୍କ ପରି ଆମେ ଧନୀ ହେବାକୁ ଚାହୁଁ କିନ୍ତୁ ଧନପତିର କୁବେର ଭଣ୍ଡାର ଫିଟିଗଲେ ଆମେ ତା'ର ସ୍ୱଳମାନ ଦୀପ୍ତିରେ ଝଲସିଯିବୁ । ଆମେ ବିଳାସ ଚାହୁଁ । ବିଳାସର ସମୁଦ୍ରରେ ଆମେ ବୁଡ଼ିଯିବୁ । ସଂସାର ଭୋଗିବାକୁ କ୍ଷୁଧା ନାହିଁ । ସଂସାର ଛାଡ଼ିବାକୁ ବଳ ନାହିଁ । ଖର୍ବ ମଣିଷର ଖର୍ବ ହାତଗୋଡ଼ ଯୋଡ଼ିକ କୌଣସି ସୀମା ଛୁଇଁପାରେ ନାହିଁ । ମୋର ଜୀବନ କାଳ ଭିତରେ ଗୋଟିଏ ହେଲେ ମର୍ଯ୍ୟାଦାଙ୍କିତ ଚୂଡ଼ ମୂହୁର୍ତ୍ତ ନାହିଁ । ମୋ ଦେଶରେ ସମସ୍ତେ ସେଇଆ । ମୋ ଯୁଗରେ ସମସ୍ତେ ସେଇଆ । ଆମେ ସଂଖ୍ୟାରେ ଅକଳନୀୟ । ଅଥଚ ବ୍ୟକ୍ତିତ୍ୱରେ, ପୌରୁଷରେ, ବଳ ଏବଂ ବୁଦ୍ଧିରେ କ୍ଳୀବ, ବାମନ । ଆମେ କଳି କରୁ, ସଂଗ୍ରାମ କରି ପାରୁନା । ଆମେ ଚୋରିକରୁ, ଲୁଣ୍ଠନ କରିପାରୁନା' । ଆମେ ଅତ୍ୟାଚାର କରୁ, ଧର୍ଷଣକରୁଁ—ସଂହାର କରିପାରୁନା ।

---

ରାଜ୍ୟଶାସନ କରିବାକୁ ମୋ ଦେଶରେ ଭୋଟ ଚୋରି ହୁଏ । ଶାସନରେ ଅର୍ଥ ଚୋରି ହୁଏ । କୋଠାଟିଏ, ଟଙ୍କାଟଙ୍କେ ପାଇଁ ବାମନ ଶାସକ ମିଥ୍ୟା କହେ । ଅଯୋଗ୍ୟ ମଣିଷଙ୍କର ଅଯୋଗ୍ୟ ପ୍ରତିନିଧିମାନେ ନିଜର ଛୋଟ ଛୋଟ ବାମନ ଇଚ୍ଛାଗୁଡ଼ିଏ ପୂରଣ କରିବାକୁ ଉପାଙ୍ଗପା ହୁଅନ୍ତି । ବ୍ୟବସାୟରେ ଲାଭ ପାଇଁ ପ୍ରତିଯୋଗିତା ହୁଏନାହିଁ—ଠକେଇ ହୁଏ--ଭେଜାଲ ହୁଏ । ଚିନିରେ କାଚଗୁଣ୍ଡ, ଔଷଧରେ ମଲା ମୂଷା ମିଶିଯାଏ । ଏଭଳି ମିଶେଇବା ଏଇ କ୍ଷୁଦ୍ର ଅପାରଗ ସୋକମଣିଷଙ୍କ ପ୍ରବୃତ୍ତି ।

ମୋ ରାଜ୍ୟର ଶିକ୍ଷାଗୁରୁ, ଧର୍ମଗୁରୁ ପଣ୍ଡିତମ୍ମନ୍ୟ, ଜ୍ଞାନ-କାତର, ବୁଦ୍ଧି-ଚେତା ଶଠ । ଛାତ୍ର ଦୁର୍ବିନୀତ, ଲକ୍ଷ୍ୟହୀନ, ହତାଶ । ଶିକ୍ଷା ଭ୍ରମସଙ୍କୁଳ । ତଥ୍ୟ ପ୍ରମାଦପୂର୍ଣ୍ଣ । ପାଣ୍ଡିତ୍ୟ ଗୋଦାମ-ଧର୍ମୀ । ସାହିତ୍ୟ ପ୍ରତିଭାଶୂନ୍ୟ । ସଂସ୍କୃତି କୋଳାହଳ ମାତ୍ର । ନ୍ୟାୟବିଚାର ପଣ୍ୟ । ଏ ବାମନ-ରାଜ୍ୟରେ ସବୁ ପଥର ଲୁଣ ପରି ଭାଙ୍ଗିଯାଏ, ଝଡ଼ିଯାଏ । ସେଥିରେ ତୋଳିବା ଯାହା ଭାଙ୍ଗିବା ତାହା । ଏ ମହାଦେଶର ପ୍ରତିନିଧିତ୍ୱ କରିବାକୁ ଜ୍ଞାତିମାନେ ନିର୍ବାଚିତ ହୁଅନ୍ତି, ଖେଳାଳୀ ନୁହେଁ । ସର୍ବଜାଣ ମନ୍ତ୍ରୀମାନେ ନିର୍ବାଚନ କରନ୍ତି । ଛୋଟ ଛୋଟ ଦ୍ୱୀପର ଛଟଛଟ ମଣିଷମାନେ ସେ ହୀନପ୍ରଭ ଅପାରଗ ବାମନମାନଙ୍କୁ ମୁହଁରେ ଲାତମାରି ପରାସ୍ତ କରନ୍ତି । ବାରବାର ପ୍ରତିସ୍ପର୍ଦ୍ଧୀର ସବୁ ଭୂମିରେ ଏ ଜାତିର ପୁରୁଷର ଅଧିକାର, ଆମର ନୁହେଁ । ଆମେ ଅପମାନକୁ ସହିଯାଉ । ଭ୍ରୂରୁ ଟେକିଦେଉ । କହୁ, ଆମେ ଦାର୍ଶନିକ ।

ମୋ ଦେଶର ଦର୍ଶନକୁ ମୋଠାରୁ ଅନ୍ୟମାନେ ବେଶି ବୁଝନ୍ତି । ସେମାନେ ହିଁ ମୋତେ ଏବଂ ଅନ୍ୟମାନଙ୍କୁ ବୁଝାଉଛନ୍ତି । ସେଥିରେ ମୋର ଗର୍ବ । ମୋ ମା'ବିଷୟରେ ସେମାନେ ବେଶି ଜାଣିଛନ୍ତି କହିଲେ ବି ମୁଁ ଗର୍ବିତ ହେବି, ଅପମାନିତ ହେବିନାହିଁ । ମୋ ଦର୍ଶନକୁ ମୁଁ ବୁଝେନା ସତ, କିନ୍ତୁ ତାକୁ ମୁଁ ବଂଶାନୁକ୍ରମରେ ବଂଚାଇଆସିଛି । ଆତ୍ମା ଅମର—ମୋ ଦେଶରେ ଏଇଟା ସକ୍ରେଟିସ୍ ପୂର୍ବରୁ କୁହାହେଉଛି । (କେବେ, ସେମାନଙ୍କୁ ପଚାରନ୍ତୁ ।) ମୁଁ କିନ୍ତୁ ମରିଯିବି ବୋଲି ସବୁବେଳେ ଡରୁଥାଏ । ମୁଁ ଯାହା ପ୍ରଚାର କରେ, ତାକୁ ବିଶ୍ୱାସ କରେନା । ଡରୁଆ ମଣିଷ କାମ କରେନାହିଁ । ସେଥି-ପାଇଁ ଶାସ୍ତ୍ର ଅଛି । ଜଗତ୍ ମିଥ୍ୟା ହେବାରୁ ଭଲପାଇବା, ଭଲ ଖାଇବା, ଭଲ ପିନ୍ଧିବା, ଭଦ୍ର ଭାବରେ ବଂଚିବା, ପରସ୍ପରକୁ ନିଃସଙ୍କୋଚ ମର୍ଯ୍ୟାଦା ଦେବା ଇତ୍ୟାଦି ସବୁ ମିଥ୍ୟା । ଏଣୁ ତା'ର ବିପରୀତଯାକ କୁଆଡ଼େ ସତ୍ୟ । କୃଚ୍ଛ୍ର ସାଧିବା, ଦିଗମ୍ବର ହେବା, ସମସ୍ତଙ୍କୁ ହେୟ ମଣିବା, ତା ବି ମୁଁ କରେ-ନାହିଁ । ମୁଁ ଜଗତକୁ ନିଏ ନାହିଁ କି ଛାଡ଼େ ନାହିଁ; କିନ୍ତୁ ସବୁଆଡ଼ୁ ଶ୍ରମ କାଟି ଦିଏ । ମାଟି ମୂଦାଟିଏ ପରି ଛୋଟ ଖଳାବାଡ଼ିଟିକୁ ସଂସାର ମଣି ସେଇଠି କ୍ଲୀବ ଜନ୍ତୁଟିଏ ପରି ବଂଚିରହେ । ସାର୍ଥକତା ପାଇଁ ବଂଶ ବୃଦ୍ଧି କରେ । ସମୟର ମୋ ପାଇଁ କିଛି ମୂଲ୍ୟ ନାହିଁ । ମୁଁ ଲୁଗା ବଦଳ କଲାପରି ଅସଂଖ୍ୟ ଥର ଜନ୍ମ ନେଇ ପାରୁଥିବାରୁ ଏବେ ଏମିତି କାଉଳି ହେବାର କୌଣସି ଅର୍ଥ ନାହିଁ । ଅନ୍ୟ ରାଜ୍ୟର ଛଟ ଛଟ ମଣିଷମାନେ ସର୍ବଦା ଧାଉଁଥାନ୍ତି, କାରଣ ସେମାନେ ଆଉ ଥରେ ଏ ପୃଥିବୀକୁ ଆସିବେ

ନାହିଁ ବୋଲି ବିଶ୍ୱାସ କରୁଚି । ମୁଁ କିଚ୍ଛୁ ଆସିବି—ଥରେ ନୁହେଁ ସହସ୍ରଥର ମୋ ଗୋସେଇଁବାପାମାନେ କହିଛନ୍ତି ; ମୋ ଦେଶର ଦର୍ଶନ କହୁଚି ! ଏଣୁ ଏଥର ନ ପାରିଲେ ଆରଥରକୁ ଦେଖିବା । ...ମୁଁ ନ କଲେ ମୋ ଭାଇ କରିବ । ସେ ନ କଲେ ମୋ ଦାଦି କରିବ । କାହିଁ ବୋଇ କାଳରୁ ମୁଁ ମୋର ବଡଗଛିଆ ପରିବାରରେ ରହିଆସିଛି । ଗୋସେଇଁବାପ, ବାପ, ପୁଅ, ନାତି, ପଣନାତି, ଅଣନାତିର ବିରାଟ ମେଳା । ସେଇଠି କୌଣସି ଜଣେ ବାସ୍ତୀ ନୁହେଁ । ସେଠି ଫଙ୍ଗୁ ପାଳିତ ହୁଏ, ଶଠ ପାଳିତ ହୁଏ, ଅଳସୁଆ ବି ପାଳିତ ହୁଏ । ଏଣୁ ଖହ ଶହ ବର୍ଷ ଧରି ଠକିବା, ଆଉ ଜଣକ ଉପରକୁ ଆଉଜି ରହିବା, ନିଜେ ଲୁଚିବା ଅଭ୍ୟାସ କରି କରି ମୋର ତାହା ସ୍ୱଭାବ ହୋଇଗଲା । ମୁଁ ସବୁବେଳେ ଆଉ ଜଣକୁ ମୋ ପାଇଁ ଶ୍ରମ କରିବାକୁ, ଦୋଷ ମୁଣ୍ଡାଇବାକୁ, ଦାୟିତ୍ୱ ନେବାକୁ ଏବଂ ଫାଶୀ ପାଇବାକୁ ଖୋଜୁଥାଏ । ମୁଁ ସବୁମତେ ବାମନ । ମୋର ହାତ ଗୋଡ, ମନ, ପ୍ରାଣ ସବୁ ଛୋଟ ।

ମୋର ବୃହତ୍ ଭାବନାଗୁଡ଼ିକ ସବୁ ଇତିହାସରେ । ମୁଁ ସେମାନଙ୍କୁ ଦେଖି ନାହିଁ । ଦେଖିବାକୁ ମୋର ଆଗ୍ରହ ନାହିଁ । ମୁଁ ଆଧୁନିକ ହେବାକୁ ଚାହେଁ ପୁରୁଣାକୁ ଉପହାସ କରେ । ଘୃଣାକରେ । ଅପରିଚିତ ହେଲେ ମଧ୍ୟ ବିଦେଶୀ ଜଂଗଟିକୁ ଆପଣେଇନିଏ । ଢଂଗ ନକଲ କରିବାରେ ଛୋଟ ମଣିଷ ଆନନ୍ଦ ପାଏ । ମୁଁ ବଡ ବଡ ମଣିଷଙ୍କୁ ନକଲ କରି ସେମାନଙ୍କୁ ଶସ୍ତା କରି-ପକାଏ । ମୁଁ ତାଂକ ଭଳି ଦିଶିବାକୁ ଯାଇ ସେମାନଙ୍କୁ ମୋ ଭଳି ବାମନ କରିପକାଏ । ମୋ ଦେଶରେ କଦବା କଣ୍ଚିତ ସାମାନ୍ୟ ବିସ୍ମୃତ ଦିଗ୍‌ବଳୟ ଦେଖୁଥିବା ମଣିଷଗୁଡ଼ିକୁ ଆମେ ଏହିପରି ବୁଢ଼େଇ ଦେଉ । ମୋ ଇତିହାସକୁ ମୁଁ ଏଇଭଳି ଅବହେଳିତ କରେ, ବେଳେବେଳେ ସଲଜ୍ଜ ସ୍ୱୀକାର କରେ ମୋ ଦର୍ଶନ କେବଳ ଧର୍ମ । ମୁଁ ତେଣିକି ପୂଜାକରେ । ମଥୁରା ଅଯୋଧ୍ୟାର ସାହିତ୍ୟକୁ ଖଟଲିରେ ଥୋଇ ଅର୍ଚ୍ଚନା କରେ––କାରଣ ପୂଜା କରିଦେଲେ ଦୂରତା ରକ୍ଷା ହୁଏ । ଆକାଶିଆ ହୋଇଯାଏ ଆଦର୍ଶ । ବାମନ କାହିଁକି ତା'ମାଟି ଛାଡ଼ି ସେଯାଏ ଉଠିବାକୁ ଯିବ? ବ୍ୟାସ ବଶିଷ୍ଠଙ୍କୁ ନେଇ ଜଗତ୍ ବିହ୍ୱଳ ହେଉଥାଉ, ସେଥିରେ ମୋର କ'ଣ ଥାଏ? ସେମାନେ ଖୋଜି ଖୋଜି ଆସି ମୋ ପାଖରେ ଅବଶ୍ୟ ପହଂଚିବେ । ମୁଁ ଛକି ବସିଛି । ଗେରୁଆ-ପିଂଧା, ଦାଢ଼ିଆ ବାମନ ଛକି ବସିଛି, କେମିତି ସେ କୌତୂହଳୀ ଯାତ୍ରୀଦଳକୁ ଭୂଆଁ ବୁଲେଇବି––ଚିତା କାଟି ଛାଡ଼ିବି । ସେମାନେ କିଛି

ନ ପାଇ ଫେରିଯିବେ । ଯାଆନ୍ତୁ । ଆମକୁ ନିନ୍ଦା କରିବେ, କରନ୍ତୁ । ଆମର ଚରିତ୍ର ନାହିଁ, ଆମେ ଠକ, ଭଣ୍ଡ, ମୂର୍ଖ, ଅଳସୁଆ, ଚୋର ବୋଲି କହିବେ, କହନ୍ତୁ । ଆମେ ଏମିତି ପ୍ରାୟ ଶୁଣୁ । ଏ ଶବ୍ଦଗୁଡ଼ାକର ଅର୍ଥ ଆମ ପାଇଁ ନାହିଁ । ମର୍ଯ୍ୟାଦା ହରାଇ ସାରିବା ପରେ ଆଉ କାହାକୁ ଯୋଡ଼େଇବା?

ପୃଥିବୀର ସବୁ ପ୍ରକାର ମୂଲ୍ୟ ଏଠି ଅଛି କିନ୍ତୁ ସବୁଗୁଡ଼ିକ ଖର୍ବ ରୂପ । ମାନବିକ ଅଧିକାର, ବ୍ୟକ୍ତି ସ୍ୱାଧୀନତା, ଦେଶପ୍ରୀତି, ଏମିତି ଏମିତି ନାନା କଥା । ଉପର ବାହାଟି ସଯତ୍ନେ ରଖାହୋଇଥାଏ । ତା'ଭିତରେ କିନ୍ତୁ ମୂଷା ପଶି ସବୁ କତରି ଦେଇଥାଏ । ଗଭୀର ଦେଶପ୍ରୀତିର ବକ୍ତୃତା ଆମ ସମସ୍ତଙ୍କର ମୁଖସ୍ଥ । ସଡ଼ ଉପରେ ଦେଶଟିକୁ ବିକି ଲାଗି ଆମେ ଖାଉଛୁ । ମୋର ସ୍ୱାଧୀନତା ଉପରେ ମୋର ଅଧିକାର । ମୁଁ ଯେତେବେଳେ ଯାହା କହିପାରେ, ଯାହା କରିପାରେ, ମୋ ଇଚ୍ଛା । ମୋ ଦେଶର ସର୍ବୋଚ୍ଚ ସଭାରେ ସେଥିପାଇଁ ଆମେ ମାଡ଼ପିଟ ଲାଗୁ । ଗାଳିଗୁଲଜ ହୁଏ । ଜୋତ ଫଟାଫଟି ହୁଏ । ଏ ସବୁ କେବଳ ଦେଶ-ପ୍ରୀତି ପାଇଁ, କେବଳ ବ୍ୟକ୍ତିର ଅଖଣ୍ଡ ସ୍ୱାଧୀନତା ପାଇଁ କ୍ଷୁଦ୍ର ମଣିଷମାନେ ପ୍ରତିଦ୍ୱନ୍ଦ୍ୱୀ କରନ୍ତିନାହିଁ । କେବଳ ଶୋଧାଶୋଧି ହୁଅନ୍ତି । ଗୋଇ ଖୋଳାଖୋଳି ହୁଅନ୍ତି । ଗୋଛି କଟାକଟି ହୁଅନ୍ତି । ପରସ୍ପରକୁ ଚଳକୁ ଚଳକୁ ଭିଡ଼ି ରଖି କେହି ଭୂଇଁ ଛାଡ଼ି ପାରନ୍ତି ନାହିଁ । ଲେସିହୋଇ ଘୁଷୁରୁଥାନ୍ତି, ପୋକପରି ।

ହିମାଳୟର ସବୁ ଦେବଦାରୁମାନେ ବାଙ୍ଗୁ ଗଛ । ହିମାଳୟ ସ୍ୱୟଂ ଖର୍ବିତ । ତା' ମଥାରେ ବିଭିନ୍ନ ପାଦଚିହ୍ନ । ଏ ଦେଶରେ କୌଣସି ଉଚ୍ଚ ଭୂମି ଆଉ ନାହିଁ ସ୍ମୃତିରେ, ବିଶ୍ୱାସରେ, ମର୍ଯ୍ୟାଦାରେ, ଆଶାରେ କିମ୍ବା କଳ୍ପନାରେ । ଏଠି ସମସ୍ତେ ଖର୍ବ, ଅନୁଦାର, ନିଷ୍ପ୍ରଭ । ଦୁର୍ବଳ ମଣିଷ ଭୟରେ ଉପରକୁ ହାତ ବଢ଼ାଏ ନାହିଁ । ଉପରକୁ ଚାହେଁନାହିଁ । ସେ ନିଜେ ନିଜକୁ ଦ୍ୱେଷ କରେ ଈର୍ଷା କରେ । ଗୋଠ ଗଢ଼ି ଲୁଚି ଲୁଚି ଅନିଷ୍ଟ କରେ । ଅଶରୁ ଅନଗଳମୟ ତା'ର ଦୁର୍ଭାବନା । ସେ ବେଲଜ୍ଜ ବୃହନ୍ନଳା । ତା'ର ଅଭିଶାପ ମେଣ୍ଟିବାର ନୁହେଁ । ଏଠି ମହନୀୟ କିଛି ଆଉ ଘଟିବାର ନାହିଁ । ଏକକ ବ୍ୟକ୍ତିତ୍ୱ ଏଠି ନାହିଁ । ଦୈବାତ୍ ଦେଖାଇଦେଲେ ସେ ମହାତ୍ମାକୁ ଆମେ ଗୁଳିକରିଦେଉ, କାରଣ ସେ ଗୋଟାଏ ବ୍ୟତିକ୍ରମ । ଆମେ ଗଣ-ବ୍ୟକ୍ତିତ୍ୱ ଗଢ଼ିବାକୁ ପ୍ରୟାସୀ । ଏଠି କେହି ଉଚ୍ଚ ହୋଇ ପାରିବେନାହିଁ । ଆମେ

ଅଭିବୃଦ୍ଧିର ବିରୋଧୀ । ଆମେ କାଦୁଅରେ ପଡ଼ିଥିବୁ । କାଦୁଅରେ ଖେଳୁଥିବୁ । ଆମେ ଅଯୋଗ୍ୟ, ହତ୍ୟା ପାଇଁ ଅଥବା ଆତ୍ମହତ୍ୟା ପାଇଁ । ଏ ବାମନଜାତି କେବେ ଜନ୍ମ ପାଇଁ ଅଭିଳାଷ ପାଳିବନାହିଁ । ଏ ରାଜ୍ୟରେ ଜନ୍ମ ଅବାନ୍ତର, ଜନ୍ମ ଏକ ଅପହଞ୍ଚ ସ୍ୱପ୍ନ । ଆମେ ଗୁଡ଼ିଏ କ୍ଷୟିଷ୍ଣୁ କ୍ଷୁଦ୍ର ପୁରୁଷ । ଆମ ଇତିବୃତ୍ତ କ୍ଷୁଦ୍ର ।



## ଯୋଗ୍ୟତରେଷୁ

ମୁଁ ଡାଳେ ଡାଳେ ଗଛେ ଗିଏ ପତ୍ରେ ପତ୍ରେ ଯିବାର ଅପୂର୍ବ ଗତିରେ ମୋତେ ଚୁମ୍ବିତ କରିଆସିଛନ୍ତି, କୌଣସି ଲକ୍ଷ୍ୟସ୍ଥଳରେ ମୁଁ ପହଂଚିବାର ବହୁପୂର୍ବରୁ ସେ ସେଠାରେ ତାଂକର ଆଧିପତ୍ୟ ବିସ୍ତାର କରିସାରିଥାଂତି, ଚିରକାଳ ଯାହାଂକ ପଚ୍ଛଦର୍ଶନ ହିଁ ମୋର ଭାଗ୍ୟଲିପି, ସବୁ ପ୍ରକାର କୁଠା ଏବଂ ଅବିଶ୍ୱାସ ସତ୍ତ୍ୱେ ତାଂକୁ ଅଗତ୍ୟା ମୋଠାରୁ ଯୋଗ୍ୟତର ବୋଲି ସ୍ୱୀକାର ନ କଲେ ଚଳନ୍ତାହିଁ । ଅନେକ ଶ୍ରମ ଏବଂ ଘର୍ମ ପରେ ଯେତେବେଳେ ମୁଁ ଅନୁଭବ କରିଛି ଯେ ଏ ସହସ୍ରେ ସୁଣ ଫଆର ପ୍ରଥମ ପାବଚ୍ଛୁ ପାଖରେ ମୁଁ ତାଂକୁ ପଚ୍ଛରେ ପକାଇ ଆସିଛି, ଅତଏବ ଏଥର ମାଣିକ୍ୟ ଝଟ ପାଖରେ ନିରୁପଦ୍ରବ ଗୋଟିଏ ଜୟମାଲ୍ୟ ମୋର ପ୍ରାପ୍ୟ, ମୁଁ ଦେଖି ବିଶ୍ୱାସ କରିପାରେନାହିଁ କିପରି ଏବଂ କେଉଁ ମାର୍ଗେ ସେ ସେଇଠି ପହଂଚି ସାରିଥାଂତି ଏବଂ ସାଫଲ୍ୟରେ ସ୍ନାନ କରୁଥାଂତି । କୌଣସି ଅଦ୍‌ଭୁତ ଇନ୍ଦ୍ରଜାଲ ବିଦ୍ୟାକୁ ସେ ଆୟତ୍ତ କରିଥିବାରୁ ସିନା ଏପରି ମାୟା ବିସ୍ତାର କରି ଅସମ୍ଭବକୁ ସମ୍ଭବ କରିପାରୁଛନ୍ତି । ଭାଗ୍ୟ-କ୍ରମେ ତାଂକ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାର ବିଡ଼ମ୍ବନା ନେଇ ମୁଁ ଜନ୍ମିଛି । ତାଂକୁ ପରାସ୍ତ କରିବାର ସ୍ୱପ୍ନାଭିଳାଷ ମୋତେ ଜୀବନ ସାରା ଘାରିଆସିଛି । ମୋ'ଠାରୁ ଏତେ ନ୍ୟୂନ, ଏପରି ମାନହୀନ, ବଳ ବିଦ୍ୟା-ବୁଦ୍ଧି ବିବର୍ଜିତ ଗୋଟାଏ ନପୁଂସକ ସହିତ ସଂଗ୍ରାମରେ ଯେ ମୋ ପରା ଯୋଦ୍ଧା କାହିଁକି ପରାସ୍ତ ହେବ, ତା'କଦାପି ମୁଁ ବୁଝିପାରିନାହିଁ, କିନ୍ତୁ ପଦେ ପଦେ ଏହାଂକ ପାଖରେ ପରାଜିତ ହେବା ମୋ ଜୀବନର ପ୍ରମାଣିତ ବିଡ଼ମ୍ବନା । ବାରମ୍ବାର ଏହିପରି ତାଡ଼ିତ ହେବା ପରେ ଯେତେବେଳେ ଆଉ ସନ୍ଦେହର ଅବକାଶ ନାହିଁ ଯେ ସେଇ ସବପ୍ରକାରେ ଖର୍ବ ମଣିଷଟି ମୋ'ଠାରୁ ଯୋଗ୍ୟତର, ତୁଳାଦଣ୍ଡରେ ଏତେ ତଳକୁ ନଇଁ ଥିବା ବ୍ୟକ୍ତିଟିର ଧାତୁ ପରୀକ୍ଷା କରିବା ପାଇଁ ମନ ବଳିବା ସ୍ୱାଭାବିକ । ଏଣୁ ଯୋଗ୍ୟତରେଷୁ, ନିବେଦିତମିଦଂ । ହେ ମୋର ବିଜେତା, କୌଣସି ଅସୂୟାଦ୍ୱେଷରେ ଚାଳିତ ନ ହୋଇ, ବିଜିଗିଷାର ଧନୁର୍ବାଣ ବହୁକାଳୁ ଫିଂଗିଦେଇ ମୁଁ ଆପଣଙ୍କୁ ଆଜି ମୋର ନିରପେକ୍ଷ ବକ୍ତବ୍ୟ ଶୁଣାଇବାକୁ ଆଗ୍ରହୀ । ଅବଧାନ ହୁଅନ୍ତୁ ।

ଆପଣଙ୍କ ମୌଳିକ ବିଚାରରେ କେବେହେଲେ କୌଣସି ଗୋଟିଏ ସଂଆର ଗୁରୁତ୍ୱ ଥିବାର ମୁଁ ଦେଖିନାହିଁ । ଯେତେବେଳେ ଯାହା ସୁବିଧା ହେଲା ଆପଣ ସେଇବାଟେ ଚଳି ଯାଉଛନ୍ତି । ଅମତ୍ତ ମାନିନାହାଂତି । କୌଣସି ବିଦ୍ୟା ପରୀକ୍ଷା ପାଇଁ ଯେତେବେଳେ ମୁଁ ବା ମୋ'ପରି ବେକୁବମାନେ

ଦିବାରାତ୍ରି ପରୁକ ଆସ୍ଥିର କରୁଥାଉ, ଆପଣ ପରୀକ୍ଷକଟିକୁ ଆସ୍ଥିର କରିନିଅନ୍ତି । ଆମ ପାଇଁ ବିଚାରକ ହେଲେ ଧର୍ମାବତାର । ତାଂକର ତୁଳାଦଣ୍ଡ ଅପହଂତ ଆକାଶରୁ ଓହ୍ଲାଇଥାଏ । ଆମେ ପରମ ଉତ୍କଣ୍ଠାରେ ଅପେକ୍ଷା କରିଥାଉ । ଆପଣ କିନ୍ତୁ ଅପେକ୍ଷା କରିଥାଂତି ଆଉଠାଏ । ଯେତେବେଳେ ତୁଳାଦଣ୍ଡ ଆଡ଼େଇ ଦେଇ ତାଂକ ଗଭୀର ଭୂମିକାରୁ ସେ ଲୋକିଲା ମଣିଷଟି ଖସିପଡ଼ି-ଥାଂତି, ଆପଣ ହାବୁଡ଼େଇ ଦିଅନ୍ତି ଲୋଭଥାଳି । ସେଥିପାଇଁ ସଚ୍ଚୋତା, ଚତୁରତା କିମ୍ବା ବିଚିତ୍ର ଚଟୁଳତାରେ ଆପଣଙ୍କର କେବେବେଳେ ଅଭାବ ନଥାଏ । ଫଳରେ ଆପଣଙ୍କର ପାଇକା ଓଜନଯାକ କିଲୋ ମୂଲ୍ୟରେ ହିସାବ କଷା ହୋଇଯାଏ । ଆମେ ଛୋନିଆଁ ହୋଇଯାଉଁ । ଆପଣ ବାରବାର ଉନ୍ନାପତ୍ରକ ସିଂଧି ଆମକୁ ଆଡ଼ନୟନରେ ଚାହିଁ ମୁଚୁକିମାରନ୍ତି । ସେମିତି ମିଛାଚ୍ଛରେ ଥିଲେ ଦି'ପଦ ଉପଦେଶ ମଧ୍ୟ ଦେଇଥାଂତି । ବିଧାମାରିଲେ ଯାହାକୁ ବିଷ୍ଣୁ ଆସେ ନାହିଁ ବୋଲି ଆମେ ଜାଣିଥିଲୁ, ତାଂକ ଲାଂଗୁଡ଼କୁ ଛୁଇଁବାର ଅଧିକାର ମଧ୍ୟ ଆମର ନ ଥାଏ । କ'ଣ କରାଯାଏ? ସବୁ ତ ଫଳେନ୍ ପରିଚିୟତେ । ସେଥିରେ ହିଁ ଆପଣ ଅାଉମାନଙ୍କଠାରୁ ଚିତେ ଉପରେ ସର୍ବଦା ବିରାଜମାନ କରିଥାଂତି । ଆମେ କିଏ ଆପଣଙ୍କ ଯୋଗ୍ୟତା ବିଷୟରେ ପ୍ରଶ୍ନ କରିବାକୁ?

ନୈତିକତା ନାଁ ପଡ଼ିଲେ ଆପଣ କହଂତି 'ମାର ଗୋଲି'। ଆପଣ ସେସବୁଙ୍କୁ ଆଉ ବାଗେ ବୁଝିନ୍ଥନ୍ତି । ଆମେ ମାନେ ନୀତିବାନ୍ ରହିବାକୁ କୃଚ୍ଛ୍ର ସାଧନା କରୁଥାଉ । ଆପଣ ସବୁପ୍ରକାର ସତୀ-ଖାଉ ଦେଇଁ ବିମାନରେ ଚଢ଼ିଯାଂତି । ଆପଣଙ୍କ ଯୁକ୍ତି ହେଲା ଯେ ପେଟରେ ଭୋକ ଥାଇ ମହୁଁରେ ଲାଜ କାହିଁକି? ସମସ୍ତେ ତ' ଅଳ୍ପ ବହୁତେ ନୀତିନିୟମ ଭାଂଗିବାକୁ ଚାହୁଁ-ଥାଂତି । ତଦ୍ୱାରା କ'ଣ ସବୁ ସୁବିଧା ସୁଯୋଗ ଲାଉ, ଲବ୍ଧ ଅଛି ତା' ବି ଜାଣିଥାଂତି କିନ୍ତୁ ସାହସର ସହିତ ଅଦୃଶ୍ୟ ଲଇସବୁଙ୍କୁ ଡେଇଁ ଟେକି ପାରି-ହେବାର ସାମର୍ଥ୍ୟ ତାଂକର ନ ଥାଏ । ଏଣୁ ଦୁର୍ବଳର ସାଂତ୍ୱନାପାଇଁ ଅଂଗୁର ଫେଂଥାକୁ ଚାହିଁ ଚାହିଁ ଓଠ ଚାଟୁଥିଲେ ସୁଦ୍ଧା ସେପରି ସର୍ବବାଦିସମ୍ମତ ମିଠା ଫଳଗୁଡ଼ିକୁ ଖଟା ବୋଲି ଆଖ୍ୟାତ କରାଯାଏ । ଏସବୁକ ଭାଂଗାମି । ଆପଣ ବରଂ ନୀତିଶିକ୍ଷା ଦିଅନ୍ତି ଏହିପରି—'ଆହେ, ଜୀବନରେ କ'ଣ ଚାହୁଁଛ ଆଗ ସ୍ଥିର କରିନିଅ । ଯଦି ଅଂଗୁର ଚାହୁଁ ନାହଁ ତାକୁ ଏମିତି ତକେଇ ରହି କାହିଁକି ପାଟି ସଡ଼ସଡ଼ କରୁଚ? ବରଂ, ଫେରିଯାଅ, କିଛି ମୂଳା ଉପାଡ଼ି ଖାଇଯାଅ । ସେଥିପାଇଁ ତୁମର ସାମର୍ଥ୍ୟ ଅଛି, ଏଣୁ ସେତିକି

ତୁମ ଯୋଗ୍ୟତା । ଯେମିତି ଯଦି ପରୀକ୍ଷାରେ ଅଧିକ ନମ୍ବର, ଦପ୍ତରରେ ଚାକିରି, ରାଜଧାନୀରେ କୋଠା ଲୋଡ଼ା, ତେବେ ଲାଜ ଲାଜ କାହିଁକି? ଯେମିତି ପାରିବ ସେଇଠି ପହଞ୍ଚିଗଲେ ହେଲା । ଲୋକଠୋକ ବାରବାର କର । ଲୋକ-ଠୋକ କଟ । ଏମିତି ବି'ଭାଗ ହୋଇ ଉତ୍ତେଜିତ ହୁଅ ନାହିଁ । ସବୁ ଲେଖିଲେ ନମ୍ବର ମିଳେ, ଲାଂଚ ଦେଲେ ବି ନମ୍ବର ମିଳେ । ଏଥିରେ ଲଜ୍ଜାର କଣ? ଯାହାକୁ ଯାହା ପଚାରିବା ସେ ତାହା କହ । ଉତ୍ତମ ଜବାବସୂଚକ ଭିତରେ ଲୋକ ଚିହ୍ନ କରିଥିବା ସେ ବିଚାରକଟିକୁ ଉପସ୍ଥ କରି ତମ ଆଡେ ଟାଣିଲେବାକୁ ଚେଷ୍ଟା ଚଳେଇଥାଅ । ଆମେ ସେଇ ମଣିଷଟିକୁ ଅନ୍ୟ ସମୟରେ ଉପସ୍ଥ କରିଦେଉଁ । ଉଦ୍ଦେଶ୍ୟ ଏକ, କିନ୍ତୁ ମାର୍ଗ ଅଲଗା । ଏଣୁ ବିଚାରକମଣ୍ଡଳୀର ପ୍ରତ୍ୟେକଟି ହୃଦବୃତ ଚିନ୍ତା ତାହାଣିକୁ ଉପଯୁକ୍ତ ମୂଲ୍ୟରେ କିଣାସରିଥାଏ । ପର କାହାରିଲେ ତୁମେ ଅଯଥା ଉତ୍ପାଏ ବିସ୍ମିତ ହୁଅ ସିନା, ସେଥିରେ ପ୍ରକୃତରେ ବିସ୍ମିତ ହେବାର କିଛି ନାହିଁ । ତାହା ନ ହୋଇ ଆଉ କିଛି ହେବା ବଡ଼ ଆଶ୍ଚର୍ଯ୍ୟ କଥା । ମୂଳ ଭୁଲ୍‌ଟି ହେଲା ଯେ, ତୁମେ ଯାହାକୁ ଯୋଗ୍ୟତା ବୋଲି ଶେଷ ପର୍ଯ୍ୟନ୍ତ ଜାବୁଡ଼ି ଧରିଥାଅ, ଆମର ଲୁପଚାର ପରେ ତା'ର ଅନେକ ଅଦଳବଦଳ ହୋଇପାରିଥାଏ ।

ମୁଁ ଏ ଯୁକ୍ତି ଶୁଣିପାରିଲା ପରେ, ଆପଣଙ୍କୁ ଯୋଗ୍ୟତର ବୋଲି ସ୍ୱୀକାର ନ କରି ଉପାୟ ନାହିଁ । ପରନ୍ତୁ ଆପଣା କରିବାରେ, ସମସ୍ତ ଲୁହାବାଡ଼ିକୁ ନିଜ ପାଇଁ ବଙ୍କେଇ ନେବାରେ ଆପଣଙ୍କ ଯୋଗ୍ୟତାକୁ କେହି ସନ୍ଦେହ କରିପାରିବ ନାହିଁ, ଆପଣ ଠିକ କହୁଛନ୍ତି । ଆମ ଦେଖିବା ଢଙ୍ଗରେ ଗୋଟାଏ ତାରତମ୍ୟ ରହିଯାଉଛି । ମୁଁ ଚାହିଁଥାଏ ମଣିଷଟାର ଶୀର୍ଷକୁ, ଏଣୁ ତାକୁ ଏକ ତା' ଦେହରୁ ଝୁଲୁଥିବା ମହାର୍ଘ ମଣ୍ଟା ଗଡ଼ୁକ ଉପରେ କାଟି ଲଗେଇ ଦିଏ । ଆପଣ ତଳେଇ ଯାଆନ୍ତି ଯେଉଁଠି ସେ ଗୋଟିଏ ଜନ୍ତୁ, ସେଇଠି ତାକୁ ଅନ୍ନ ଆହାର ଦେଇ ଉପସ୍ଥ କରିବା ସହଜ । କିନ୍ତୁ ମଣିଷଟାକୁ ସେଇଳି ପୋଷ ମନେଇବା ଦସ୍ତୁର—ଏଇ କାରଣରୁ ମୁଁ ହାରିଯାଏ ଏବଂ ଆପଣ ଜିଣନ୍ତି । ସାମନାସାମନି ମୁକାବିଲାରେ ଜିତାପଟର ମାତ୍ରା ଊଣା ରହିବା ସ୍ୱାଭାବିକ କିନ୍ତୁ ସାକୁଲାସାକୁଲି ସାଲିସ୍‌ରେ ସେ ଭୟ ନାହିଁ । ମୋଟ ଉପରେ ଲଢ଼ିବା କାହାରି ହେଲେ ସେଇଳି ସରଳ ବା ଲକ୍ଷ୍ୟ ହୋଇ ନ ଥିବାରୁ ଜିଣିବାପାଇଁ ଏମିତି ସବୁବେଳେ ମୁକାବିଲା କରିବା ନିର୍ବୋଧତା ନୁହେଁ କି? ଏବଂ ସେଇଟା ହିଁ ତ ମୋର ଅଯୋଗ୍ୟତା ।
ମତଲବଟିକୁ ଠିକ୍ ବୁଝି ତାକୁ ହାସଲ କରି ନେବାରେ ଆପଣ ସିଦ୍ଧହସ୍ତ ।

କେବଳ ମଣିଷ ନୁହେଁ, ନୀତିନିୟମ, ଅନୁଷ୍ଠାନ ସବୁ ନିଜକୁ ସୁହାଇଲା ଭଳି ମୋଡ଼ିଦେଇପାରିବା ହେଉଛି ଆପଣଙ୍କ ବାହାଦୁରି । ଯାହା ଆମ ଆଖିରେ ଅଯୋଗ୍ୟତା ପରି ଦିଶେ, ତାକୁ ହିଁ ସର୍ବସମକ୍ଷରେ ଯୋଗ୍ୟତାରୂପେ ସ୍ୱୀକାର କରାଇନେବା ଆପଣଙ୍କର ଅସାଧାରଣ ସାମର୍ଥ୍ୟ । ଏଣୁ ତଳକୁ ମୁହଁ ପୋତି ନିଷ୍ଠାର ସହିତ ଯେ କାମ କରେ, ସେ ହୋଇଯାଏ ବଳଦ ଏବଂ ଯେ କାମ କରିବାର ଭାନ କରିପାରେ, ସେମିତି ଚହଟ ଛାଡ଼ିପାରେ, ଠିକଣା ଲୋକ ପାଖରେ ଠିକଣା ପ୍ରଚାର ପହଞ୍ଚାଇ ଦେଇପାରେ, ସେ ହୁଏ ସଫଳ ଏବଂ ସାର୍ଥକ କର୍ମୀ । ସେହି କାରଣରୁ ପ୍ରଚାର ଉପରେ ଆପଣ ଏତେ ଜୋର୍ ଦେଇଥାଆନ୍ତି । ଆପଣଙ୍କ ବିଶ୍ୱାସ ଯେ ସାତତୁଣ୍ଡରେ କହାଇ ପାରିଲେ ଛେଳିଟା କୁକୁର ହୋଇଯାଇପାରେ । ତେଣିକି ସମସ୍ତଙ୍କ ପାଖରେ ନିଜକୁ ଛେଳି ବୋଲି ଜାହିର କରିବା ଦାୟିତ୍ୱ ତା'ର । ଲୋକଙ୍କର ତେଣିକି ସନ୍ଦେହ ହୁଏ ଯେ ଗଣଭୋଟରେ କୁକୁର ହୋଇଥିବା ଏ ଜନ୍ତୁଟି ଛେଳି ପରି ଦିଶୁଛି କାହିଁକି? ଏହିପରି ଛଳନାତ୍ମକ ଆଚରଣ ଦଣ୍ଡନୀୟ ଅପରାଧ ନା ନୁହେଁ? ତାର କୁକୁରପଣିଆ ସର୍ବାଦୌ ଅସ୍ୱୀକାର କରୁଥିବା ନିର୍ବୋଧଙ୍କ କୁକୁରୀତିର ସାକ୍ଷ୍ୟପ୍ରମାଣ କେହି ନିଏ ନାହିଁ । ସର୍ବଶେଷରେ ସାକ୍ଷୀ ସବୁତ ପାଇଁ ସେ କଂସେଇ ପାଖକୁ ଦେଇପଠେଇଦିଏ—ମରୁ ପଛେ ଅନ୍ତତଃ ଛେଳି ବୋଲି ତ ଚୂଡ଼ାନ୍ତ ପ୍ରମାଣ ମିଳିଯିବ । ଫଳହୁଏ ଯେ କୁକୁର ମାରେଣି ଅପରାଧରେ କଂସେଇ ଜେଲଦଣ୍ଡ ଭୋଗକରେ ଏବଂ ଏହିପରି ଛେଳିର ଇତିବୃତ୍ତ ସରିଯାଏ ।

ଅନ୍ୟ ପକ୍ଷେ ଆପଣ ନିଜର ପୈତୃକ ସାରମେୟ ଚେହେରା ଉପରେ ଗୋଟିଏ ସିଂହର ଖୋଳ ମଢ଼େଇ ଅନ୍ୟପ୍ରକାର ପ୍ରଚାର ଚଳେଇ ଦିଅନ୍ତି । ପଶୁରାଜଙ୍କ ପାଇଁ ଝାମଝାଡ଼ ଡାକରା ଶୁଭେ । ଭଉଭଉ ଧାଇଁବା ପରିବର୍ତ୍ତେ ଆପଣ ବିକ୍ରମ ସହିତ ଗାଜନ୍ତି । ମହୁରିଆ ଭଉ ଧ୍ୱନି ପରିବର୍ତ୍ତେ ତଣ୍ଟିମୂଳରୁ ଗାରୁ ଗାରୁ ଗର୍ଜନ ହୁଏ । ସମସ୍ତଙ୍କର ଭୟ, ସମ୍ମାନ, ସମ୍ଭ୍ରମ ପାଇଁ ଯଥେଷ୍ଟ ପରିପାଟୀର ଆୟୋଜନ କରାଯାଏ । ଯେଉଁ କେତେ ଜଣ ଖୁବ୍ ସରୋଳ ଏବଂ ବନ୍ଧୁ ପରିଜନ ଆପଣଙ୍କ ସ୍ୱରୂପ ସହିତ ପରିଚିତ, ତାଙ୍କୁ ମଧ୍ୟ ଛୋଟବଡ଼ ମୁଖା ଆପଣ ଯୋଗାଡ଼ କରିଦେଇଥାଆନ୍ତି । ମୁଖା ଭିତରୁ ପରସ୍ପର ଲାଙ୍ଗୁଡ଼ ଦେଖି ଆପଣ ସ୍ୱଜାତି ଚିହ୍ନଟ କରି ପକାନ୍ତି । ଏକାଠି ଛୁକ ଜାଗା ଜଗି ଦିଅନ୍ତି । 'ଏକଜୁଟ ହୋଇଯାଅ, ସିଂହଭାଇମାନେ', 'ଆମକୁ ଯେଉଁମାନେ କୁକୁର କହୁଛନ୍ତି ସେମାନେ ଦେଶଦ୍ରୋହୀ । ତାଙ୍କୁ ନଖଦାନ୍ତରେ ଚିରିଚିରି କରିଦିଅ ।

ଆଉ ଯେଉଁମାନେ ବିଶୁଦ୍ଧ ଚ୍ଛେଳି ବୋଲାଉଛନ୍ତି, ସେମାନେ ହିଁ କୁକୁର। ସେମାନଙ୍କୁ ଆମ ସେବାରେ ନିଯୁକ୍ତ କର।' ଏହିପରି ଆପଣଙ୍କ ସହିତ ସମାଜନୀତି, ମୂଲ୍ୟବୋଧ ଏବଂ ଯୋଗ୍ୟତାରେ ବିଶ୍ୱାସ କରୁଥିବା ଗୋଷ୍ଠୀଟିଏ ଆକାଶମାର୍ଗରେ ଥାଇ ବିଚିତ୍ର କୁହୁକବିଦ୍ୟାରେ ସମସ୍ତଙ୍କୁ ଚାଳନ୍ କରୁଥାଚି ଏବଂ ଶାସନ କରୁଥାଚି।

ଥରେ ଦୁଇଟି ପାଦ୍ରୀବନ୍ଧୁ ଜଣେ ଚିହ୍ନା ଚୋରକୁ ବଢ଼ିଆ ପୋଷାକ ପିନ୍ଧି ଯାଉଥିବାର ଦେଖିଲେ। ଜଣେ ଆଉ ଜଣକୁ ପଚାରିଲା, 'ଚୋରି ଭଳି ପାପ କଲେ କ'ଣ ଦଣ୍ଡ ଏଇଆ ମିଳେ?' ଆଉ ଜଣକ ଉତ୍ତର ଦେଲା, 'ରହିଥା, ପାପର ପ୍ରାୟଶ୍ଚିତ୍ତ ଅବଶ୍ୟ ହେବ, ସେ ଯିବ କୁଆଡେ?' ତା'ର କିଛି ବର୍ଷ ପରେ ଦେଖାଗଲା ଯେ ସେ ବିରାଟ କୋଠା କଲାଣି, କାହିଁ। କାହିଁ। ସପରି ଠକ କଲାଣି। ଦିନେ ସେ ଗାଡ଼ିରେ ଧୂଳି ଉଡ଼େଇ ଚାଲିଗଲା- ବେଳେ ପୁଣି ସେହି ପାଦ୍ରୀ ତାର ବନ୍ଧୁକୁ ପଚାରିଲା, 'କିଓ, ଏ କ'ଣ ଘଟଣା? ସେ'ତ କ'ଣ ଆହୁରି ଉଠିଲା' ଉତ୍ତର ହେଲା, 'ରହିଥା, ସେ ଯିବ କୁଆଡ଼େ?' ତା'ପରେ ସେ ହେଲା ପ୍ରତିଷ୍ଠିତ ନେତା, ମନ୍ତ୍ରୀ, ରାଷ୍ଟ୍ରଦୂତ- ବୟସ ବଢ଼ିଚାଲିଲା। କୋଠା ଉପରେ କୋଠା, ଗାଡ଼ି ପଛକୁ ଗାଡ଼ି, ଉପରୁ ଆଉରି ଉପରକୁ ସେ ଉଡ଼ିଚାଲିଲା। ପାଦ୍ରୀ ଦୁଇଟିର ସେଇ ପ୍ରଶ୍ନ, ସେଇ ଉତ୍ତର। ପରିଶେଷରେ ଦିନେ ଜରାଜୀର୍ଣ୍ଣ ଦୁଇଟି ପାଦ୍ରୀ ସେଇ ଛକ ପାଖରେ ଅସହାୟ ଠିଆହୋଇଥାଚି, ବିରାଟ ଶୋଭାଯାତ୍ରାଟାଏ ପାଖେଇ ଆସିଲା। ସୁସଜ୍ଜିତ କମାଣଗାଡ଼ି ଉପରେ ଫୁଲର ବେଦି, ତା'ପରେ ଜାତୀୟପତାକାରେ ଆବୃତ କରି ମହାମାନ୍ୟ ଅମୁକଙ୍କୁ ସତ୍କାର ପାଇଁ ନିଆଯାଉଥାଏ। ମଲାବେଳକୁ ତାଂକର ବୟସ ପଂଚାନବେ ବର୍ଷ। ସେ ବିଧିମତେ ପାଂଚଥର ବିବାହ କରି ପୃଥିବୀର ପାଂଚଟି ଅତୁଳନୀୟା ସୁନ୍ଦରୀଙ୍କୁ ପତ୍ନୀରୂପେ ଲାଭ କରିଥାଚି। -ତାଂକର କିଶାଧିକ ପତ୍ର ପୃଥିବୀର ବିଭିନ୍ନ ଦେଶର ଧନପତି, ଶତାଧିକ ନାଚି ନାତୁଣୀ। ପ୍ରଶ୍ନ କରୁଥିବା ପାଦ୍ରୀ କେବଳ ତାଂକ ବନ୍ଧୁ ମୁହଁକୁ ଚାହିଁଲେ। ଆଉଜଣକ ବି କିଛି ସମୟ ସେମିତି ନିର୍ବୋଧ ଭଳି ଚାହିଁବା ପରେ ଅନ୍ତୁ ହସି କହିଲେ, 'ପରିଶେଷରେ ସେ ମଲା ନା ନାହିଁ?' ପ୍ରଥମ ପାଦ୍ରୀର ନୈତିକ ପ୍ରଶ୍ନ ପାଇଁ ଏହାଠାରୁ ବଳି ଆଉ ପରିହାସ ନଥିଲା। 'ବେ, ସେ କଣ ମରି ନ ଥାଂତା କି?' ମରିବା କ'ଣ ତା'ର ସମସ୍ତ କୁଟିଳ ଜୀବନର ଅସଂଖ୍ୟ ଦୁରାଚାର ପାଇଁ ଦଣ୍ଡ? ମରିବେ ତ ସମସ୍ତେ—ଧନୀ, ଦରିଦ୍ର, ସାଧୁ,

ଅପାଧୁ କିନ୍ତୁ ଯାହାଙ୍କୁ ଏ ଦରିଦ୍ର ପାତ୍ରୀମାନେ ଗୌରବରେ ପଢ଼ିବ ବୋଲି ଭାବିଥିଲେ, ସେ ଜୀବନର ସବୁ ଫୁଲର ମହୁ ଖାଇ ଖାଇ, ତାଙ୍କୁ ଆଖି ମାରିଦେଇ ଖସିଗଲା । ପ୍ରମାଣ କରିଦେଇଗଲା ଯେ, ନିଜକୁ ନିଜେ ଛୁଟିବାଧି ସତ୍ୟ, ଧର୍ମ, ନ୍ୟାୟ ନାଁରେ ବେଢ଼ି ସିଂଧି ବସିଥିବା ବହୁ ବିଦ୍ୟା ବୁଦ୍ଧିର ଏଇ ବଳଦ ହୃଳକ ସମ୍ପୂର୍ଣ୍ଣ ବେକଦ୍ର—ସେମାନେ ବାଧ୍ୟହୋଇ ତାଙ୍କଠାରୁ ଯୋଗ୍ୟତର ବ୍ୟକ୍ତିର ଶ୍ମଶାନ ଯାତ୍ରାକୁ ସମ୍ମାନ ଦେଇଥିଲେ ।

ସାମାନ୍ୟ ମାତ୍ରାଭେଦରେ ଆପଣଙ୍କ ପାଇଁ ମଧ୍ୟ ମୋତେ ଦିନେ ଏହା କରିବାକୁ ହେବ ବୋଲି ମୁଁ ଜାଣିଛି । ଇତ୍ୟବସରେ କିନ୍ତୁ ଆପଣ ପଦେ ପଦେ ମୋତେ ପରାସ୍ତ କରି ଚାଲିଛନ୍ତି । ମୁଁ କେବଳ ବିସ୍ମିତ ପାତ୍ରୀ ପରି ତାଜବ୍ ହୋଇ ଅନେଇଁଛି । ଚାଲିବାର ସବାତଳେ ଆପଣଙ୍କ ନାଁ ଥିବାର ସମସ୍ତେ ଜାଣିଛନ୍ତି । ପଦୋନ୍ନତି ପାଇଁ ସେଦିନ ବିଚାର ଆରମ୍ଭ ହେଲା । ଆପଣ ସାଇବଙ୍କ ଡ୍ରାଇଭର, ପିଅନ, ରୋଷେଇଆମାନଙ୍କ ସାଙ୍ଗେ ଖୁବ୍ ଭାବ–ଦୋସ୍ତି କରି ସମସ୍ତଙ୍କୁ ଟଙ୍କା ଦାମ୍‌ରେ କିଣିନେଲେ । ସେଇଟା ଆପଣଙ୍କ ପଦ୍ଧତି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେହିପରି ବିଭାଗୀୟ କିରାଣିଟିକୁ ପାଦଠାରୁ ଶିଖାଯାଏ ଆପଣ ଚିକ୍‌କଣ କରିଦେଲେ ଏବଂ ସେ ଆପଣଙ୍କୁ ଦେଖିଲା ମାତ୍ରେ ଖାଲି କରୁଳିଛା—ତା ବି କିଛି ନୂଆ ନୁହେଁ । ସାଇବଙ୍କ ଖୋଦ ସେଫ୍ଟାର ହାତରେ ତାଙ୍କୁ ବୁଢ଼େଇ ତା'ମାଲିକ ଯାଏ ଚେଙ୍ଗା ବଢ଼ାଇଲେ, ତା ବି ଜଣାଶୁଣା କଥା । କିନ୍ତୁ ମାଲିକମାନେ ଉପସ୍ତୁମେ ସେ ଡାକବଙ୍ଗଳାରେ ଥିବାବେଳେ ହଠାତ୍ ସନ୍ଧ୍ୟାବେଳେ ଆପଣ କେମିତି ସେଇଠି ସସ୍ତ୍ରୀକ ପହଂଚିଗଲେ? କେମିତି ବା ଚମତ୍କାର ବିଦେଶୀ ପାନୀୟର ବାକ୍ସଟିଏ ଆଗରୁ ଯୋଜନା କଲାଭଳି ଆପଣଙ୍କ ଗାଡ଼ିରୁ ବାହାରିଲା ଏବଂ ଲାଜଲାଜ ହୋଇ ଆପଣ ତାକୁ ସେମାନଙ୍କୁ ସମର୍ପି ଦେଇଥିଲେ? ଅଧଘଣ୍ଟାଏ ପରେ ନ ଖାଇ ନ ପିଇ କଣ ଜରୁରି କାମରେ ବାହାରି ଆସିଥିଲେ ଏକୁଟିଆ ଏବଂ ଫେରିଥିଲେ ତା ଆରଦିନ ସକାଳୁ? ସାହେବମାନେ ଜଳଖିଆ ଖାଇଲା–ବେଳେ ଗୋଟିଏ ଛୋଟ ଭଫାଫା ଟେବୁଲ କୋଣକୁ ରଖିଦେଇ ଗୋଟିଏ ଆଠଅଙ୍କି ନମସ୍କାରରେ ଆପଣ ଏ ସମସ୍ତ ଉପଚାରର ମୂଡ଼ି ମାରିଥିଲେ ପାଂଚଦିନ ଭିତରେ ଦେଖାଗଲା ଯେ ଆପଣ ଆଦିବାସୀ ଅଂଚଳରେ ରହି ସେମାନଙ୍କ ଭାଷା ଓ ସଂସ୍କୃତି ଉପରେ ଅଗାଧ ପାଂଡିତ୍ୟ ଲାଭ କରିଥିବାରୁ ଏବଂ ସରକାର ସବୁ କ୍ଷେତ୍ରରେ ସେହିଭଳି ଅଫିସରଙ୍କ ସାହାଯ୍ୟ ଲୋଡ଼ୁଥିବାରୁ ଆପଣଙ୍କ ମୁଣ୍ଡରେ ଉଚ୍ଚପାହ୍ୟାର ଶାଢ଼ି ବନ୍ଧାହୋଇଗଲା । ମୁଁ ନତମସ୍ତକ

ସ୍ୱୀକାର କରୁଛି ଯେ ଆପଣଙ୍କର ଏ ସମସ୍ତ ଯୋଗ୍ୟତା ପାଇଁ ଆମେ ଆଦୌ ଭାଜନ ନୋହୁ ।

ଏଥିପାଇଁ ଯେ ମୁଁ କେବେହେଲେ ଘୃଣାକରେ ଏକଥା ଭାବିବେ ନାହିଁ । ମୁଁ ଖାଲି ବିସ୍ମିତ ହୁଏ । ଆପଣଙ୍କ ଧାଞ୍ଚଟା ହିଁ ଅଲଗା । ଜୀବନର ମୂଲ୍ୟ, ଆଶା ଅଭିଳାଷ ମଧ୍ୟ ସେଇ ଅନୁପାତରେ ଭିନ୍ନ । ପୁଅ ପାଇଁ ବେତନ ଦେଇପାରି ମୁଁ ଅନନ୍ୟୋପାୟ ହୋଇ ଯେତେବେଳେ ଯୋତାରେ ତାଳି ପକାଉଥାଏ, ଆପଣ ନୂଆ ଘରୁ ପରଦାଟେକି ନାଇଟ୍‌ଗାଉନ ଭିତରୁ ଟା'ଣୋଷି କହୁଡ଼ିଆ ପଦ୍ଧଳକୁ ଅନେଇଥାଂତି—ଦେଖୁଥାଂତି କେମିତି ନୂଆ ଡ୍ରାଇଭର ତିନି ନଂବର ଗାଡ଼ି ଧୋଉଛି । ଆପଣ ମୋ ତୁଳନାରେ ପ୍ରଚୁର ବିଭଶାଳୀ । ଆପଣଙ୍କ ସ୍ୱପ୍ନ, ଆଉରି ଇଟା ସିମେଂଟ ଏକାଠି କରିବେ । ଆହୁରି ଚାରିଚକିଆ ଫୁଲାଏ କରିବେ । ଘରର ଜଣପିଛା ବି'ବି'ଟା ଗାଡ଼ି ଝଡ଼ିବେ । ଏ ଅଭି-ଳାଷ ପୂରଣ ପାଇଁ ନାନା ଫଂଦି ଫିକର କରିବାକୁ ପଡ଼ୁଥିବ । ପଚାଶ ଲୋକଂକୁ ପଚାଶ ପ୍ରକାରେ ସନ୍ତୁଷ୍ଟ କରିବାକୁ ପଡ଼ୁଥିବ । ଆପଣ ତାଂକ କଥା ବୁଝିଲେ ଗଣ ପୁଝିଲା ପରି ସେ ଆପଣଙ୍କ କଥା ବୁଝିଦିଅନ୍ତି । ମଝିରେ ଯଦି କେହି ଜଣେ ଭଉଣୀଙ୍କର ଦୀପ ଜାଳିବାକୁ ଖର୍ଚ୍ଚ ହୋଇଯାଉଛି, ସେଥିକୁ ଆପଣ ପରବାୟ୍ କରିବାକୁ ବେଳ ନାହିଁ । ଅଯୋଗ୍ୟ ପୁଅକୁ ବିରାଟ ଶିଳ୍ପ ସଂସ୍ଥାର ମ୍ୟାନେଜର କରି ଥାପିବାରେ, କିଂବା କୁରୂପା କନ୍ୟାକୁ ସୁନା ମଣ୍ଡଣିରେ ବୁଡ଼େଇ କୌଣସି ଦେବକାଂତ ବିଚକ୍ଷଣ ଯୁବକ ସହିତ ଛନ୍ଦି ପାରିବା ପରେ ଉଭୟଙ୍କୁ ଶୂନ୍ୟମାର୍ଗେ ନେଇ ବିଦେଶୀ ଐଶ୍ୱର୍ଯ୍ୟରେ ସ୍ଥାପନ କରିବାରେ, କେନ୍ଦ୍ର ମନ୍ତ୍ରୀଠାରୁ ଆରମ୍ଭକରି ଏ ରାଜଧାନିଆ କିରାଣିକ ପର୍ଯ୍ୟନ୍ତ ସମସ୍ତଙ୍କୁ ଗୋଟାଏ ଯନ୍ତ୍ରରେ ବାନ୍ଧିବାକୁ ପଡ଼ୁଥିବ । ଏ ବ୍ୟାପାରଟି ଅସମ୍ଭବ ପରି ଦିଶୁଥିଲେ ସୁଦ୍ଧା ଆପଣ ତାହା ସାଧି ପାରନ୍ତି । ଯେତେ ଅଯୋଗ୍ୟତାକୁ ଘୋଡ଼େଇ, ତାକୁ ଅସ୍ୱୀକାର କରି, ତା'ଉପରେ ଦାଉ ଦାଉ ପଟ୍ଟ ମଡ଼େଇ ସବୁଠାରୁ ଚଢ଼ା ଭାଉରେ ବିଚିତ୍ର ବିପଣିରେ ଉଠିଆ ହୋଇଯାଂତି ।

ଏ ଅସାଧାରଣ ବାହାଦୁରି ପାଇଁ ଆପଣ କଦାପି ଆଂଭମାନଂକର ସାଧାରଣ ନିୟମ ମାନିପାରିବେ ନାହିଁ । ଏଣୁ ମିଛ କହି ଆପଣ ଜିଭ କାମୁଡ଼ନ୍ତି ନାହିଁ କିଂବା ଚୋରି, ଜାଲିଆତି, ଦଗାବାଜି କରିଦେଇ ବୁକୁରେ ଛେପ ପକାଂତି ନାହିଁ । ନିଜ ଯୋଜନା ସଫଳେ ଆପଣ ନିଧଡ଼କ ଦୁରାଚାରିତା ଖୁନ୍ ମଧ୍ୟ କରିପାରନ୍ତି । ଙ୍ଘରର ନିୟମ, ସଘାର ନିୟମ, ଗହ୍ୱାଳର ଚଉହଦି କେବଳ

ସାପଖିଆ ନେଉଳଙ୍କ ପାଇଁ । ସିଂହ ନ ହେଲେ ବି ସିଂହ ପରି ବଂଚିବାକୁ ହେଲେ ହିଂସ୍ର ଆଚରଣ ସ୍ୱାଭାବିକ । ଅମଡ଼ା ମାଡ଼ିବା ସ୍ୱାଭାବିକ । ସେଥିପାଇଁ ଆପଣଙ୍କୁ ସମସ୍ତ ବାଟ ଛାଡ଼ିଦିଏ, ନିୟମ ଭୁଷୁଡ଼ିପଡ଼େ । କିଏ ପଚାରେ ଧର୍ମ, ସମାଜ ବା ରାଷ୍ଟ୍ରକୁ?—କିମ୍ବା କିଏ ପଚାରେ ଇହକାଳ ପରକାଳର ଝଞ୍ଜଟ ସବୁ? ଆପେ ସୁଖୀ ତ ଜଗତ ସୁଖୀ । ପ୍ରଥମେ ନିଜେ ଭୋଗି ପାରିଲା ପରେ ସୁବିଧା ଦେଖି ବାକି କଥା । ବଳବାନ ପାଇଁ କିଛି ବାରଣ ନାହିଁ ।—ବଢ଼ିଆ ଯୁକ୍ତି ; ଏ ସଂସାରକୁ ବିଳସିଯିବା ପାଇଁ ଅନନ୍ୟ ଯୋଗ୍ୟତା । ଯଦି ଆପଣ ସତକୁ ସତ ସିଂହ ହୋଇଥାଂତେ, ମୁଁ ମଧ୍ୟ ଆପଣଙ୍କ ପଂଝାତଳକୁ କିଛି କିଛି ଜୟଗାନ କରିଥାଂତି କିଂତୁ ଆପଣଙ୍କ ଶିଆଳ ରୂପକୁ ଦେଖି ଦେଖି ମୁଁ ଚକିତ । କେତେ ଚଂଚଳ ଲାଂଗୁଡ଼ ହୁଲେଇ କୁଁ କୁଁ ସ୍ୱରରେ ଆପଣ ଲଇଁ-ପଡ଼ଂତି, ଏ ଆଖି ତା' ଦେଖିଛି । କାହା ପାଦତଳକୁ ଆଇଁଷଟିଏ ଚାଟିଦେବା-ପାଇଁ ଏ ଲଇଁ ପଡ଼ିବା ଢଂଗ ଆପଣଙ୍କୁ ଭାରି ମାନେ । ଆପାଦଶୀର୍ଷ ଆପଣଙ୍କର ସବୁ ଝଳା ହୁଗୁଳା । ଚମତ୍କାର ଗଢ଼ିଯିବା ପାଇଁ ସତେ ବା କେଉଁ ବିଶ୍ୱକର୍ମା ଆପଣଙ୍କୁ ଗଢ଼ି ରଖିଛି । ଫଣାରେ ସିଂହ ଏବଂ ଲାଂଗୁଡ଼ରେ କୁକୁର ଗୁଣ ଧାରଣ କରିଥିବା ଅଦ୍‌ଭୁତ ସାପଟିଏ ଆପଣ । ଆପଣଙ୍କୁ ଦେଖିଲେ ମୁଗ୍ଧ ହୋଇ ଚାହିଁ ରହିବାକୁ ହୁଏ, ଆଖିରେ ଆଖି ମିଶିଗଲେ ଯେ କେହି ପଥର ପାଲଟି ଯିବା କିଛି ବିଚିତ୍ର ନୁହେଁ ।

ଏ ଦେଶକାଳକୁ ଚାହିଁ ଆପଣ ହିଁ ଉପଯୁକ୍ତ ପାତ୍ର । ଆପଣ ରୂପରେ ବିଶ୍ୱାସୀ, ଗୁଣ ତା'ର ଅନୁବର୍ତ୍ତୀ । ଯାହା ଦିଶେ ତାହାହିଁ ବଶୀଭୂତ କରେ, ପରାସ୍ତ କରେ । ଗୁଣ ଅପ୍ରକଟ, ପରୀକ୍ଷାସାପେକ୍ଷ, ବ୍ୟବହାରସିଦ୍ଧ ; ଏଣୁ ତାକୁ ଜଗିବସିବା ସମୟର ଅପବ୍ୟୟ । ସତ କହିବା କୌଣସି ବାହାଦୁରି ନୁହେଁ, -କେବଳ ଧର୍ମଭୀରୁ ଏବଂ ପରିଣାମ-କାତର ମଣିଷ ସତ କହେ । ଆପଣ ବୁଝିଛଂତି ଯେ, ସତ୍ୟଭାଷୀ ହେବା ଅପେକ୍ଷା ମିଷ୍ଟଭାଷୀ ହେବା ଅଧିକ ଫଳପ୍ରଦ । ସେଥିରେ ଅନେକ କୌଶଳ, ବାକ୍‌ଚାତୁରି, ଆତ୍ମବିଶ୍ୱାସ ଏବଂ ସାହସ ପାଇଁ କ୍ଷେତ୍ର ରହିଛି । ଆପଣ କଥା କହି ପାଣିରେ ସର ପକେଇ ପାରଂତି । ହସରେ ମହୁ ବର୍ଷି ପାରଂତି । ଏଥିପାଇଁ ଆପଣଙ୍କ ବ୍ୟବହାର ଶାସ୍ତ୍ରରେ ବିଚାରବୁଦ୍ଧି ଅପେକ୍ଷା ଚତୁରତା ଅଧିକ ବାଂଛନୀୟ । ଚତୁରତାରେ କିଂଚିତ ଶଠତା ରହୁ ସେଥିରେ କିଛି ଯାଏ ଆସେ ନାହିଁ, କାରଣ ଶଠ ନ ହେଲେ କୌଣସି ବେପାର ଚଳିବ ନାହିଁ । ଆପଣ ଜୀବନ-ବଣିଜର ଉତ୍କୃଷ୍ଟ ବେପାରୀ । ବଂଚିବା ମୌଳିକ ଧର୍ମ । ଏଣୁ ସ୍ୱାର୍ଥ ହିଁ ଠୋସ୍ ସତ୍ୟ, ବାକି ସବୁ ଚାଲ୍‌ବାଜି !

ଏଇ ଦେଖୁ ନାହାଂତି ଗୋଟିଏ କଥା ! ପଚିଶ ବର୍ଷରେ କ'ଣ ଗୋଟାଏ ପଟୀ ଗାର ପଡ଼ିଥିଲା--ତା'ପରେ ସରକାର ନିଯୁକ୍ତି ଦେବେନାହିଁ । ସ୍ୱା' ଭିତରେ ପୁଅକୁ ପଚିଶ୍ ଟେଇଁଗଲା । ଆପଣ ବାହୁବଳ ଲଗେଇ ଗାର ଘୁଞ୍ଚେଇଦେଲେ ଅଠେଇଶ ପର୍ଯ୍ୟନ୍ତ । ସେଥିରେ ଦେଶ ଉଚ୍ଛନ୍ନ ହୋଇଯାଉ, କିଏ ପଚାରେ? ଆପଣଙ୍କ ପଡ଼ିଆ ଜମିରେ ନନ୍ଦକୁ ମୋଡ଼ିନେଇ ମଡ଼େଇ ଦେଲେ ପାଟଙ୍କତ ଗାଁର ଚିନିଫପଲି ଖଇରାତ୍ ଉଜୁଡ଼ି ଯାଉ । ଆପଣ ହାତୀ କଲିଜା ଭାଜି ଖାଇବା ପାଇଁ ଦଂତା ଯୂଥପତିକୁ ମାରି ଗଡ଼େଇ ଦେଲେ, ସେତେବେଡ଼ ଭବ୍ୟ ପରିବାର ହାହାକାର କରୁଥାଉ, ସେଥିକି କିଏ ଖାତିର କରେ? ପଣ୍ଡିତ ହେବା, ଧାର୍ମିକ ହେବା ସବୁ ମୂର୍ଖ ବେଠିଆଂକ ମେହେନତ କଥା । ମୋଟ ଉପରେ ହେବା ଅପେକ୍ଷା ସେଇଭଳି ଦିଶିବା ହିଁ ବେଶି ଗୁରୁତ୍ୱପୂର୍ଣ୍ଣ । ଆପଣ ଏ ସମସ୍ତ ଭଳି ଦିଶିବାକୁ ସବୁପ୍ରକାର ଉପଚାର ବିଦ୍ୟାରେ ଦୂରସ୍ତ । ମାରଣ, ତାରଣ, ବଶୀକରଣ ଆପଣଙ୍କ ଆୟତ୍ତ ହୋଇପାରିଛି ।

ଏଣୁ ଅଶେଷପ୍ରକାରେ ଆପଣ ଆଂଭଠାରୁ ଯୋଗ୍ୟତର । ଆମେ ଆପଣଙ୍କ ସାଫଲ୍ୟରେ ଯେତିକି ବିସ୍ମିତ ସେତିକି ପ୍ରଲୁବ୍ଧ କିଂତୁ ସେଭଳି ଯୋଗ୍ୟତା ପାଇଁ ଆମର ଉପାଦାନ ନାହିଁ । ଆମ ଧାତୁ ଅଲଗା । ଏଣୁ ଆପଣ ଯାଂ'ତୁ ସତ୍ରେ ସତ୍ରେ । ଆମ ଗତି କିଂତୁ ଡାଳେ ଡାଳେ । ଆମ ବର୍ଣ୍ଣ ଅଲଗା, ଏଣୁ ମାର୍ଗ ବି ଅଲଗା । କିଏ ଭୁଲ କିଏ ଠିକ୍ ସେ କଥା ଏଠି ପଡ଼ିନି । ମୂଳତଃ ଆମ ଦହିଁଙ୍କ ଭିତରେ ତୁଳନା ନାହିଁ, କାରଣ ସମଭୂମି ନାହିଁ । ଏଣୁ ଆପାତତଃ ଦିଶୁଥିବା ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ନାହିଁ । ତଥାପି ଏକଦା ଏ ଡାଳରେ ଥାଇ ଆପଣ ସେ ସତ୍ରକୁ କୁଦାମାରିଥିଲେ ବୋଲି ଏ ବିଶିଷ୍ଟ ବାହାଦୁରି ପାଇଁ ଆପଣ ଆମଠାରୁ ଯୋଗ୍ୟତର--ସେଂତେବେଳେ, ଏବଂ ସବୁକାଳକୁ ଯୋଗ୍ୟତର !!



# ଅଜ୍ଞାତବାସ

ଯୁଗ ଶାପଗ୍ରସ୍ତ ହେଲେ ଯୁଗଧର ପୁରୁଷମାନେ ସ୍ୱୟଂ ହୀନପ୍ରଭ ହୋଇ ମଉଳି ଯାଆନ୍ତି । ଭୀମାର୍ଜ୍ଜୁନ ପରି ବଳିଷ୍ଠ ଯୋଦ୍ଧାମାନେ ନିଷ୍ପ୍ରଭ-ପୌରୁଷ ନେଇ ଉଦ୍‌ବାସ୍ତୁ ବନଚାରୀରୂପେ ଭ୍ରମଣ କରନ୍ତି । ସେତେବେଳେ ସ୍ୱୟଂ ଧର୍ମପୁରୁଷ ମଳିନ ଅଜ୍ଞାତବାସ ବରଣ କରିଥାନ୍ତି । ସେଭଳି ଯୁଗର ସୂର୍ଯ୍ୟ କେତୁଗ୍ରସ୍ତ, ହିମାଦ୍ରିନନ୍ଦିତ ପୃଥିବୀ ଛାୟାଚ୍ଛନ୍ନ ।

ଯେ କୌଣସି ଝଟକୁଥିବା ପ୍ରତିଭାକୁ ଅସହିଷ୍ଣୁ ଅପଶାସକମାନେ ଘୋଡ଼ା-ଶାଳରେ ଅପବ୍ୟୟ କରିଦେବା ଏକ ଦୈନନ୍ଦିନ ଘଟଣା । ରାଜହେମା ପରି ସୁକୁମାର ଶାଳୀନ ମର୍ଯ୍ୟାଦାକୁ ବିଚ୍ ବଜାର ଉପରେ ଉଲଗ୍ନ କରିବା ସେମାନଙ୍କର ନିରପରାଧ ପୌରୁଷ । ନିରାଡ଼ମ୍ବର ଋଷି କାନ୍ଧରେ ଭାର ବୁହାଇବା, ତାଙ୍କୁ ହୁଡ଼ା ବଳଦ ସାଙ୍ଗରେ ଜୁଆଳି ଫାନ୍ଦି କୋରଡାରେ ନିର୍ଯ୍ୟାତିତ କରିବା ଶାସକ ଶକ୍ତିର ଏକ ଉପଭୋଗ୍ୟ ଖିଆଲ, ନିରଙ୍କୁଶ ଯୁଗଧର୍ମ । ଏ ଯୁଗର ଶକ୍ତିମାନ୍ ପୁରୁଷମାନେ ଶବରପଲ୍ଲୀର ମୁକ୍ତାଫଳ ପରି ଅତ୍ରତତ୍ର ବିକୀର୍ଣ୍ଣ । ଏଠି ମୂଲ୍ୟ ଅନୁପସ୍ଥିତ ନୁହେଁ ମୂଲ୍ୟ ଅନାଦୃତ, ଅବହେଳିତ, ଉପେକ୍ଷିତ । ସୂର୍ଯ୍ୟ ଅସ୍ତମିତ ନୁହେଁ, ମେଘାଚ୍ଛନ୍ନ । କୀଚକମାନଙ୍କର ଏ ବିରାଟ ଦେଶରେ ସୁଧନ୍ୱା ପାଣ୍ଡବମାନେ ବିଧିବଶାତ୍ ଆଶ୍ରୟଭିକ୍ଷୁ । ଏ ରାଜ୍ୟ ସେମାନଙ୍କ ପାଇଁ ଅଜ୍ଞାତବାସ ।

ଭାଗ୍ୟକୁ ଆଦରି ଅଜ୍ଞାତବାସ ଭୋଗୁଥିବାବେଳେ ନିଜର ସବୁ ମହିମା ଅପ୍ରକଟ ରଖିବାକୁ ହୋଇଥାଏ । ଅକଥନୀୟ ଲାଞ୍ଛନା, ଅପମାନ ମୁଣ୍ଡପାତି ସହିଯିବାକୁ ହୋଇଥାଏ । ନରଶାର୍ଦ୍ଦୁଳମାନେ ପୋଷା ବିଲେଇର ଭୂମିକାରେ ନ୍ୟୂନ ଅଭିନୟ କରିବାକୁ ବାଧ୍ୟ ହୁଅନ୍ତି । ଉଗ୍ରତେଜା ମଲ୍ଲବୀରମାନେ ହୁସ୍ତହାତର ଥାପୁଡ଼ି ଖାଇ ସହିଯାଆନ୍ତି । ସିଂହନାଦ କରି ଉଠି ଦୁଲୁକେଇବାର ବେଳ ଆସି ନାହିଁ । ନେମିଘୋଷରେ କୁରୁକ୍ଷେତ୍ର ଅନୁନାଦିତ ହେବାର ସମୟ ଏ ନୁହେଁ । ଦାନ୍ତ ଜାବୁଡ଼ି ଅନ୍ଧାରର ଏ ବିପର୍ଯ୍ୟୟ ସହିବାକୁ ହେବ । ଅପେକ୍ଷା କରିବାକୁ ହେବ ଏ ଆକାଶରେ ପୁନଶ୍ଚ ସୂର୍ଯ୍ୟର ପ୍ରତିଷ୍ଠା ।

ଅଜ୍ଞାତବାସର ଏ ଅବମାନନା କ୍ରୋଧର ଅଗ୍ନ୍ୟୁତ୍ପାତ ପାଇଁ ସହାୟକ । ଏ ଲାଞ୍ଛନା, ଏ କ୍ଷୁଧା, ଏ ଜ୍ୱାଳା, ଆଗାମୀ ମହାହବର ପ୍ରସ୍ତୁତି । ପ୍ରବଳ ଧାରା ନଦୀ ପ୍ରବାହକୁ ବଳାତ୍କାର ଅବରୋଧ କଲେ ସେ ଫେନାୟିତ କ୍ରୋଧର

ଛାୟା ବିସ୍ତାର କରେ । ସେ ଅହରହ ପ୍ଲାବନର ମନ୍ତ୍ର ଜପୁଥାଏ । ନଦୀବକ୍ଷର ଛାଇ ପଛରେ ସ୍ଫୀତ ହୋଇ ଉଠୁଥାଏ ପ୍ରଳୟର ଦୁର୍ବାର ଶକ୍ତି । ସେହି ଶକ୍ତି ସଂଚୟ କରିବାକୁ, ସଙ୍କଳ୍ପ ଦୃଢ଼ କରିବାକୁ, ଶତ୍ରୁଘାତୀ କୃପିତ କୁଠାରମାନଙ୍କୁ ଶାଣିତ, ଅଭିମନ୍ତ୍ରିତ କରିବାକୁ ଏ ଅଜ୍ଞାତବାସ ଏକ ଘୋର ତପସ୍ୟା । ଏ ଭଳି ତାପିତ ନହେଲେ, ସାଧୁପୁରୁଷମାନେ କୃଚ୍ଛ୍ର ହୁଅନ୍ତିନାହିଁ ; ଦୟାଶୀଳ, କ୍ଷମାଶୀଳ ଉଦାରପୁରୁଷମାନେ ଧନୁ ଧାରଣ କରନ୍ତିନାହିଁ । ଧର୍ମର ଏଭଳି ଗ୍ଲାନି ନ ଆସିଲେ, ସେଭଳି ନୂତନ ଅଭ୍ୟୁତ୍ଥାନ ସମ୍ଭବ ହୁଏନାହିଁ । ଭୀମକର୍ମା ବୃକୋଦରମାନେ ଏ ଭଳି କ୍ଷୁବ୍ଧ, ଲାଞ୍ଛିତ ନହେଲେ, ସେଭଳି ବେଣୀସଂହାର ହୁଏନାହିଁ କିମ୍ବା, ସେଭଳି ଊରୁଭଞ୍ଜନ ହୁଏନାହିଁ । ଅଜ୍ଞାତବାସ ଏକ ବିଶୋଧନ-ଅଗ୍ନି, ଏକ ବହ୍ନିଷ୍ଣୁ ପ୍ରସ୍ତୁତି, ଏକ ନୀରବ ସଫଳତା ।

ଗୋଟିଏ ଅନ୍ଧ ଅପଶକ୍ତିର କବଳରେ ଏ ରାଷ୍ଟ୍ର ଧୃତ । କପଟପାଶାର ପ୍ରହେଳିକାରେ ଜ୍ଞାନ, ବୁଦ୍ଧି, ପରାକ୍ରମ ସବୁ ପରାସ୍ତ । ଟହଟହ ହସୁଥିବା ମଦାନ୍ଧ ଶତପୁତ୍ରର ଶାସନରେ ଧର୍ମ ଏକ ପଳାତକ ଭିକ୍ଷୁ । ଅରଣ୍ୟରେ କିଏ ଚିହ୍ନେ ଦିବ୍ୟତେଜା ପାଣ୍ଡବଙ୍କୁ? ଏ ରାଜପୁତ୍ରଙ୍କର ଐଶ୍ୱର୍ଯ୍ୟ କାହିଁ? କେୟୂର କଙ୍କଣ କାହିଁ? ଅପରିଚିତ ଭୂମିରେ ଅପରିଚିତ ଆଗନ୍ତୁକ ପରି ସେମାନେ ଅପରିଚିତ ଆହାର ଗ୍ରହଣ କରିଛନ୍ତି, ଅପରିଚିତ ଆଶ୍ରୟ ଭିକ୍ଷା କରିଛନ୍ତି । କଠୋର ବନବାସର ତାଡ଼ନାରେ ସୁକୁମାର ରାଜପୁତ୍ରମାନେ ହୋଇଛନ୍ତି ରୁକ୍ଷ, କର୍କଶ, କଷ୍ଟସହିଷ୍ଣୁ । ପ୍ରତ୍ୟେକ ତାଡ଼ନାରେ ବାହାରେ ବର୍ମ ଦୃଢ଼ୀଭୂତ ହୋଇଛି, ଭିତରେ ଅଗ୍ନି ସନ୍ଦୀପିତ ହୋଇଛି । ଯୋଦ୍ଧା ଯୁଯୁତ୍ସୁ ହୋଇ ଉଠିଛନ୍ତି, ଧର୍ମଭୀରୁ ହୋଇ ଉଠିଛନ୍ତି ଧର୍ମ-ସଂସ୍ଥାପକ । ଦ୍ୱାଦଶ ଗ୍ରୀଷ୍ମର ଅଗ୍ନି, ଦ୍ୱାଦଶ ଦୁର୍ଦ୍ଦିନର ଧାରାପାତ ସେମାନଙ୍କୁ କମାରଶାଳର ଶରଫଳା ପରି ତପ୍ତ-ଶୀତଳ ପ୍ରକ୍ରିୟାରେ ବଜ୍ରଦୃଢ଼ କରିଛି । ସେଇ ପାଂଚୋଟି ମାତ୍ର ନିଷ୍କଳଙ୍କ ଶରଫଳାରେ ସାରା ପୃଥିବୀକୁ ଦଗ୍ଧୀଭୂତ କରିବାର ଅପ୍ରତିହତ ବହ୍ନି ସଂଚିତ ହୋଇଛି ବାରବର୍ଷ ବନବାସ ଭିତରେ ।

ଏ ତପସ୍ୟାର ଚୂଡ଼ାନ୍ତ ତୀବ୍ରତା ହେଉଛି ଅଜ୍ଞାତବାସ । ନଭଚାରୀ ଶ୍ୟେନରାଜମାନେ ପକ୍ଷ ସଙ୍କୁଚିତକରି କାକକୁଳାୟରେ ଆଶ୍ରା ଲୋଡ଼ିଛନ୍ତି । ମଳିନ ଛଦ୍ମବେଶରେ ଲୁଚି ଯାଇଛି ଦେଦୀପ୍ୟମାନ ବ୍ୟକ୍ତିତ୍ୱ । ଶାପଗ୍ରସ୍ତ ଯୁଗର ନିସ୍ତବ୍ଧ ଯୁଗପୁରୁଷମାନେ ସ୍ୱୀକାର କରିନେଇଛନ୍ତି ଭାଗ୍ୟର ବିଡ଼ମ୍ବନା । ଜୀବନର ଅସଂଖ୍ୟ ଯୁଦ୍ଧରେ ସ୍ଥିର ରହୁଥିବା ଶୀର୍ଣ୍ଣ ଦୀପଶିଖା ପରି ନିଷ୍କମ୍ପ ଜଳୁଥିବା, ମାନବୀୟ ସତ୍ୟ କୌଣସି ଆବୃତ ନେତ୍ର ଦରିଦ୍ର ବ୍ରାହ୍ମଣ ରୂପେ ଆସି ରାଜ-

ଦ୍ୱାରରେ କୃପାଭିକ୍ଷା କରିଚାଲିଛନ୍ତି । ଶାଳବନ୍ତ ପରି ଲମ୍ବମାନ ବାହୁବିଶିଷ୍ଟ ଶୌର୍ଯ୍ୟଦେବ ନତ ନୟନରେ ତଡ଼ିଏ ଅନ୍ନର ଯାଚନା କରିଛନ୍ତି । ଇନ୍ଦ୍ରପରି ଅମିତ ପରାକ୍ରମୀ ଧନୁର୍ବିଦ୍ୟା, ଶରାସନ ଫିଙ୍ଗିଦେଇ ମାଗିଛନ୍ତି ନଟୀର ବୃତ୍ତି । ଝଲମଲ କରୁଥିବା ବଳବନ୍ତ ତାରୁଣ୍ୟ କୌଣସି ପ୍ରକାରେ—ଅଶ୍ୱପାଳ ହୁଅନ୍ତୁ ବା ଧେନୁପାଳ ହୁଅନ୍ତୁ—ଲୁଚି ଯାଉଛନ୍ତି ଅଜ୍ଞାତବାସର ଆଢୁଆଳରେ । ତପସ୍ୟାର ଏ ଉଦ୍‌ଯାପନ ପର୍ବରେ ତାଙ୍କୁ କେହି ଯେପରି ନଚିହ୍ନେ । ସେମାନେ ସ୍ୱୟଂ ନିଜକୁ ସୁଦ୍ଧା ଯେପରି ନଚିହ୍ନନ୍ତି ସେଥିପାଇଁ ସେମାନେ ତତ୍ପର ।

କଥିତ ଅଛି, ଏକଦା ଅନ୍ୟ ଏକ ଶାପଗ୍ରସ୍ତ ଯୁଗର ରାଜସଭାରେ ମହାମହିମ ଦେବତାମାନଙ୍କୁ ଭୃତ୍ୟ ସେବାରେ ନିଯୁକ୍ତ କରାଯାଇଥିଲା । କିଏ ଥିଲେ ଦ୍ୱାରରକ୍ଷୀ ତ ଆଉ କିଏ ଥିଲେ ସଭାନର୍ତ୍ତକ । ସେମାନେ ହୀନପ୍ରଭ ହୋଇ ଅଭିଶାପ ସ୍ୱୀକାର କରିଥିଲେ । ଅପବ୍ୟବହାର କରୁଥିବା ଦାନବ ତାଙ୍କୁ ଜାଣି-ଥିଲା କିନ୍ତୁ ବିଜେତାର ଅଭିମାନରେ ସେ ତାଙ୍କୁ ମର୍ଦ୍ଦିତ କରୁଥିଲା । ସବୁ ରଶ୍ମି ସଂବରଣ କରି ଦେବତାମାନେ ଦାରୁଣ ଯାତନା ସହି ଯାଉଥିଲେ, ଅପେକ୍ଷା କରୁଥିଲେ ଶାପମୋଚନର ମୁହୂର୍ତ୍ତକୁ । ଅପେକ୍ଷା କରୁଥିଲେ କେତେବେଳେ ପାଷାଣ ତରଳିବ, କେତେବେଳେ ସମୁଦ୍ର ଲଙ୍ଘନ ହେବ, ସ୍ୱର୍ଣ୍ଣମୟୀ ଲଙ୍କା ଦାନବଶୂନ୍ୟ ହେବ । ଗିରିଗହ୍ୱାର ତପସ୍ୱୀ ଜପ କରୁଥିଲେ ଶାପମୁକ୍ତିର ମନ୍ତ୍ର । ନିଭୃତରେ ବ୍ରହ୍ମତେଜାମାନେ ଦକ୍ଷିଣ ଦିଗକୁ କୋପଦୃଷ୍ଟିରେ ଚାହୁଁଥିଲେ । ଏମନ୍ତେ କିନ୍ତୁ ଅନନ୍ୟୋପାୟ, ସମନ୍ତେ ଭଗ୍ନପକ୍ଷ ବିହଙ୍ଗ ।

ଅଭିଶାପରେ ଭାରାକ୍ରାନ୍ତ ଏ ପୃଥିବୀ । ଲୁଚିଯାଅ ଯେ ଯେଉଁଠି ଅଛ ତେଜସ୍ୱୀ ପୁରୁଷମାନେ । ତୁମକୁ ବର୍ତ୍ତମାନ କେହି ଚିହ୍ନିପାରିବେ ନାହିଁ । କୀଚକ ରାଜ୍ୟରେ କାହାର ଦୃଷ୍ଟି ନାହିଁ ତୁମକୁ ଚିହ୍ନିଯିବା । ସେମାନେ କିପରି ବୁଝିବେ ଯେ ଖାଲି ପାଦରେ ନିଃଶବ୍ଦ ଚାଲୁଥିବା, ଧୋତି ପାଲୁଡ଼ା ପିନ୍ଧିଥିବା, ସଦାବେଳେ ମଚମଚ ଦାଢ଼ି ଭିତରୁ ମଲ୍ଲୀକଢ଼ ପରି ହସୁଥିବା, ବଡ଼ ବଡ଼ ଆଖି ଟୋଳି ଭାରି ନରମ ଚାହାଣୀରେ ହାକିମର ତର୍ଜନ ସହୁଥିବା ସେ ନାତିଦୀର୍ଘ ମଣିଷଟି ଧର୍ମରାଜ? କିପରି ବୁଝିବେ, ଯେ କୁଞ୍ଚିତ କେଶଭାର ତଳୁ ଶାର୍ଦ୍ଦୂଳ ପରି ଚାହୁଁ-ଥିବା, ଗାଳି ଖାଇଲେ ଗମ୍ଭୀର ହୋଇ ହେଁଟମାଥ ନୀରବ ଠିଆହେଉଥିବା, ମାଲିକ ବିଜେ ହେଲେ ଗାଡ଼ି କବାଟ ଖୋଲି ଧରୁଥିବା ସେ ଦୀର୍ଘଗ୍ରୀବ ବିକ୍ରାନ୍ତ ପୁରୁଷ ସେମାନଙ୍କ ବେତନଭୋଗୀ ଗାଡ଼ିଚାଳକ ନୁହେଁ ; ସିଂହପରି

ନିରୁଦ୍‌ବିଗ୍ନ ବକ୍ଷ ଉଭାରି ଚାଲୁଥିବା,ପରିଘପରି ବାହୁ ଯୋଡ଼ିକ ଲୁଟାଇ ପାରୁ ନ ଥିବା,ପଦ୍ମପାଖୁଡ଼ା ପରି ଆଖିରେ ତଳକୁ ଚାହିଁ ରହିଥିବା ସେ ସୁଗଠିତ ଶ୍ୟାମଳ ପୁରୁଷଟି ସେମାନଙ୍କ ରଙ୍ଗଶାଳାର ବଟଲ୍ଲର ଭୃତ୍ୟ ନୁହେଁ ; କିଂବା ସେ ମଳିନବସନା ଗନ୍ଧର୍ବୀ ପରି ସୁନ୍ଦରୀ,ବିଷର୍ଣ୍ଣ କାନ୍ଦ କାନ୍ଦ ମୁହଁ ତୋଳି ଆଦେଶକୁ ଅପେକ୍ଷା କରୁଥିବା ମୁକ୍ତକେଶା ନାରୀ ସେମାନଙ୍କ ଲାଳସାର ସାମଗ୍ରୀ ନୁହେଁ ? ସେମାନଙ୍କର ସେ ସାମର୍ଥ୍ୟ ନାହିଁ,ସେ ଦୃଷ୍ଟି ନାହିଁ !

ନିଜର ସମସ୍ତ ବିଭୂତିକୁ ଢାଙ୍କି ରଖିବା,ଶୃଗାଳର ଗର୍ଜନ ଶୁଣି କେଶରୀ ତାର ଶଟା ବିକାଶ ନ କରିବା ଅତି ଦୁଃସାଧ୍ୟ ସଂଯମ । ଆଗ୍ନେୟଗିରି ଗର୍ଭରେ ତରଳ ଅଗ୍ନି ଲହଡ଼ି ମାରୁଥିଲେ ସୁଦ୍ଧା ଉପରକୁ ଉଦ୍‌ଗୀର୍ଣ୍ଣ ହୋଇ ଫାଟି ନପଡ଼ିବା ପ୍ରାୟ ଅସମ୍ଭବ ବ୍ୟାପାର । ସେହିପରି ପରାକ୍ରମୀ,ଧନୁର୍ବଳରେ ପୃଥ୍ୱୀ ଧାରଣ କରିବାକୁ ସମର୍ଥ ଯୋଦ୍ଧାମାନେ ତଳକୁ ମୁହଁ ପୋତି ନିର୍ଯ୍ୟାତନା ଭୋଗକରିବା ହିଁ ଧର୍ମର ଗ୍ଲାନି । ସେମାନେ ସ୍ୱୟଂ ଅଜ୍ଞାତବାସ ବରଣ କରିଥାନ୍ତୁ ଅଥବା ଯୁଗାଶ୍ରୟୀ କପଟାଚାର ତାଙ୍କୁ ସେଥିପାଇଁ ବାଧ୍ୟ କରିଥାଉ, ସେଥିରେ କିଛି ଯାଏ ଆସେ ନାହିଁ । ଯେଉଁ ମଥା ଅଗ୍ରଣୀର ମୁକୁଟ ପାଇଁ ଯୋଗ୍ୟ,ତା ଉପରେ ସମସ୍ତ ଯୁଗର ଯାତନା,ଜଟାଭାର ଲଦି ହୋଇଯିବା ହିଁ ଅଭିଶାପ । ସେମାନେ ଯୁଗ ଯନ୍ତ୍ରଣାର ପ୍ରତିନିଧି । ପ୍ରତ୍ୟେକ ବ୍ୟକ୍ତି ଭିତରେ ଆଉଟି ହେଉଥିବା ଅସନ୍ତୋଷ,ନିର୍ଯ୍ୟାତିତ ଅସହାୟତା,ବାଷ୍ପରୋଧ କରୁଥିବା କ୍ରୋଧ,ଦୃଢ଼ ହୋଇ ପାରୁନଥିବା ବିଦ୍ରୋହର ସଂକଳ୍ପ, ବୋହିଆସି ଏଇ ଦେବତାତ୍ମା ଗିରିଗର୍ଭରେ ଠୁଳହୋଇଥାଏ । ସେମାନେ ସେ ବିଷଜ୍ୱାଳାରେ ଜଳୁଥାନ୍ତି । ତା'ପରେ ସାରା ପୃଥିବୀ କମ୍ପିତହୁଏ । ଗୁରୁଗର୍ଜ୍ଜନ ଶୁଭେ ଅତଳରୁ । ତଥାପି ସେ ଅଗ୍ନିକୁ ଧାରଣକରି ନିଷ୍କମ୍ପ ଠିଆରହିଥିବା ପର୍ଯ୍ୟାୟ ହିଁ ଅଜ୍ଞାତବାସ । ଝାସମାରିବା ପୂର୍ବରୁ ପଶୁରାଜ ସଂକୁଚିତ ପ୍ରବୁଦ୍ଧ ହୋଇଯିବାର ପର୍ଯ୍ୟାୟ ହିଁ ଅଜ୍ଞାତବାସ ।

ସମସ୍ତ କୀଚକ ରାଜ୍ୟ ଚକିତ ହୁଏ । ମଣିମୁକୁଟ ନଡିହୋଇ ବସିଥିବା ଅଧ ଅପଶାସକର ଶତପୁତ୍ର ଉଚ୍ଛୁଳା ନଦୀକୁ ରୋଧୁଥିବା ମାଟିବନ୍ଧ ପରି ଭୁଷୁଡ଼ି ପଡ଼ନ୍ତି । ଅସଂଖ୍ୟ ଶଙ୍ଖନାଦରେ ଧର୍ମଯୁଦ୍ଧ ଉଦ୍‌ଘୋଷିତ ହୁଏ । ଶମୀବୃକ୍ଷର କୋଟରରୁ ଝଲମଲ ଶାଣିତ ଦିବ୍ୟାସ୍ତ୍ର ପରି ଅଜ୍ଞାତବାସ ଭିତରୁ ବାହାରି ଆସନ୍ତି ଯୁଗନ୍ଧର ପୁରୁଷମାନେ । ନିର୍ଯ୍ୟାତିତ ସାଧୁମାନଙ୍କର ପରିତ୍ରାଣ ହୁଏ ;

ଦସ୍ୟୁତମାନଙ୍କର ବିନାଶ ହୁଏ । ଉଦ୍ଧତ କ୍ରୋଧରେ ଦୁର୍ମତିର ବକ୍ଷ ବିଦାରଣ କରି ରକ୍ତ ପିଆହୁଏ । ସମସ୍ତଙ୍କ ସମକ୍ଷରେ ସତ୍ରୁହନ୍ତାର ଶିରଶ୍ଛେଦନ ହୁଏ । ଗୋଟି ଗୋଟି କରି ଶତ ସତ୍ରୁଙ୍କୁ ଯଜ୍ଞଭୂମିରେ ପଶୁବଳି ଦିଆହୁଏ । ରକ୍ତସ୍ନାନ କରି ଆଶ୍ୱସ୍ତ ପୃଥିବୀ ବେଣୀବନ୍ଧନ କରେ । ଅଜଗର କବଳରୁ ମୁକ୍ତହୁଏ ଶାପଗ୍ରସ୍ତ ଯଦୁ । ଧର୍ମକୁ ମାଡ଼ିବସି ଆଚ୍ଛନ୍ନ କରିରଖିବାର ସବୁ ଅପଶକ୍ତି ଏବଂ ଅଜ୍ଞାତବାସରୁ ନିର୍ଗତ ସମସ୍ତ ଦେବ-ଦୀପ୍ତ ପୁରୁଷକାର ଉଦ୍ଧସ୍ୱ ଖର୍ବହୋଇଯାଂତି ମହାହବର ଯଜ୍ଞଭୂମିରେ । ନିଶ୍ଚିହ୍ନହୋଇଯାଂତି ଅଧରାଡାର ଶତେସତ୍ରୁ । କ୍ଲାଂତ, ପରିଶ୍ରାଂତ, ବିଗତଦବଳ୍ଲ ହୋଇଯାଂତି ଯୁଗର ମୂଲ୍ୟ, ଧର୍ମ ଏବଂ ଯାତନାକୁ ଧାରଣକରିଥିବା ଯୁଗଧର ପୁରୁଷମାନେ ।

ସେମାନେ ସତ୍ୟକୁ ଧାରଣ କରିଥିବାରୁ ନିର୍ଭୀକ । ନିର୍ଭୀକ ହେବାରୁ ଯୋଦ୍ଧା କିନ୍ତୁ ଠିକ୍ ସେହି କାରଣରୁ ସେମାନେ ଅପଶକ୍ତିର ଶତ୍ରୁ । ସେହି କାରଣରୁ ସେମାନେ ଦଂଡିତ ବନବାସୀ, ପରିଚୟହୀନ ଯାଯାବର । ଜତୁଗୃହରୁ ଅଜ୍ଞାତବାସ ପର୍ଯ୍ୟଂତ ସେମାନଂକର ଦୁରଂତ ପରୀକ୍ଷା । ସେଥିରେ ସେମାନେ ପେଷି ହୋଇ ପଥର ଫଟେଇ ଉଭାରି ଆସିଛଂତି ଦୁର୍ବାର ବନସ୍ପତି ପରି । ତାଂକର ସୁକୁମାର ନାବାଳକୀ କଟିଯାଇଛି । ସେମାନଂକର ଧୈର୍ଯ୍ୟ, ଶୌର୍ଯ୍ୟ, ସାମର୍ଥ୍ୟର ଅଗ୍ନି ପରୀକ୍ଷା ହୋଇଛି । ସେମାନେ ଯେ ଯୁଗଧାରଣ କରିପାରିବେ, ଏହା ପ୍ରମାଣିତ ହୋଇଛି । ଦଳକୁର ସିଂହଶାବକ ଭୟଂକର ପଶୁରାଜରେ ପରିଣତ ହୋଇଛି । ବନବାସର ଜ୍ୱାଳା ଦେଇ ପାରିହେବା ପୂର୍ବରୁ ସେମାନେ ଧର୍ମକ୍ଷେତ୍ର ପାଇଁ ପ୍ରସ୍ତୁତ ଯୋଦ୍ଧା ନହୁଂତି । ସେମାନେ କେବଳ ଗୁଡ଼ିଏ ଉଜ୍ଜ୍ୱଳ ସଂଭାବନା । ଅଜ୍ଞାତବାସ ଚୂଡ଼ାଂତ ପ୍ରବେଶ । ତା'ପରେ ସେମାନେ ଅପ୍ରତିହତ ଅପରାଜେୟ ଦାବାନଳର ଶିଖା ।

ନିଜକୁ ପୂର୍ଣ୍ଣ ପ୍ରକାଶିତ, ପୂର୍ଣ୍ଣ ବିକଶିତ କଲା ପରେ ଯେ ପ୍ରଚଂଡ ଅଗ୍ନିଝଡ ଉପରେ ପାଉଁଶ ଜମିଆସିଛି । ସେମାନେ ମଳିନ, ନିଷ୍ପ୍ରଭ ହୋଇଯାଇଛଂତି ଆଉ ଗୋଟିଏ ପ୍ରକାର ଅଜ୍ଞାତବାସ ଭିତରକୁ । ଦ୍ୱାପର ଯୁଗର ସଂଧ୍ୟା ଛାଇ ଭିତରେ ଅପସୃୟମାନ ସେ ପାଂଚଟି ମୂର୍ତ୍ତିଙ୍କର ନିର୍ଦ୍ଦିଷ୍ଟ ଜ୍ୱଳଂତ ସଂଜ୍ଞା ଏବଂ ବ୍ୟକ୍ତିତ୍ୱ ଲିଭି ଲିଭି ଆସୁଛି । ନୀରବ କୁରୁକ୍ଷେତ୍ର ଏବଂ ନୀରବ ହିମାଦ୍ରିରେ ସତ୍ୟର ପ୍ରତିଷ୍ଠା ହୋଇସାରିଛି । ସେମାନେ ଆଉ ଗୋଟିଏ ଅଜ୍ଞାତ ବିରାଟ ରାଜ୍ୟକୁ ଅପସରି ଯାଉଛଂତି କିନ୍ତୁ ଏ ବିରାଟ ସେ ବିରାଟ ନୁହେଁ, କିଂବା ଏ ଅଜ୍ଞାତବାସ ସେ ଅଜ୍ଞାତବାସ ନୁହେଁ ।

# ମୌନ

ଆଜି କାହିଁକି କେଜାଣି ଭାରି ମନ ହେଉଛି ଚୁନିପଡ଼ିଯିବାକୁ ସବୁଦିନ ପାଇଁ । କ'ଣ ବା ସତେ ଏଠି କହିବାର ଅଛି ଆଉ? ଏ ଅରଣ୍ୟରେ କୌଣସି ରୋଦନର କିଛି ଅର୍ଥ ନାହିଁ । ଏଠି ଅଜସ୍ର କୋଳାହଳ, ଅନେକ ବନ୍ୟ ଉପଦ୍ରବ । ଏଠି ବରଂ ଚୁନିପଡ଼ିଯିବା ଭଲ । ଏଠି ଭାଷା ଅର୍ଥହୀନ । ଭାବର ବଣିଜ କେହି ବୁଝେନା । ଗାଳି, ଗୁହାରି ବା ଜ୍ଞାନ କେହି କିଛି ଏଠି ଶୁଣନ୍ତି ନାହିଁ । ଛାଡ଼...କାହିଁକି ଆଉ ଅଯଥା ପ୍ରାଣର ହୃବନରେ ଗୁଡ଼ିଏ ଦିକି ଦିକି ଶବ୍ଦର ଆଳୁଅ ଜାଳିବାକୁ ଯିବା?...ପୃଥିବୀର ନାଭିକେନ୍ଦ୍ରରୁ ମହାଶୂନ୍ୟ ଯାଏଁ ଲମ୍ବମାନ ସତ୍ୟକୁ ଯଦି ଧାରଣ କରିବାକୁ ଏ ଅନୁଦାର ପ୍ରାଣରେ ସ୍ଥାନ ନାହିଁ, ତାକୁ ନିରୁଦ୍‌ବେଗ ପ୍ରସବ କରିବାକୁ ଯଦି ଏ କୁଣ୍ଠିତ ନଡ଼ଅଡ଼ ଶବ୍ଦଗୁଡ଼ିକ ଅପାରଗ, ତେବେ ଚୁନିପଡ଼ିଯିବା ବରଂ ଭଲ ନୁହେଁ କି? ଏ ଦେଶକାଳର ଆକାଶ ନପୁଂସକ ; ପୃଥିବୀ ଧର୍ଷିତା, ରକ୍ତକ୍ଷରା ; ସବୁସାଧୁଜନେ କ୍ଷତବିକ୍ଷତ ଉଦ୍‌ଭିଦ ପରି ବିକଳାଂଗ ! ହେଇ, ସେ ଚଳକୁ ମୁଣ୍ଡପୋତି ଅପସରି-ଯାଉଥିବା ଏବଂ ଜଟାମଣ୍ଡିତ ବ୍ୟାସ ପରି ଦିଶିଯାଉଥିବା ଅପମାନିତ ବ୍ୟକ୍ତିଟି ପାଇବେଚିଆର ବନ୍ଦୀ ବୈଜ୍ଞାନିକ, ଯାର ଜିଭ କାଟିଦିଆଯାଇଛି । ସେ ହୁଏତ ଏ ସମସ୍ତଙ୍କୁ କ୍ଷମା କରିଛି । ତା'ର ସେ ବଡ ବଡ ପଦ୍ମପାଖୁଡ଼ା ପରି ଆଖି ତୋଳି ହୁଏତ ପ୍ରାର୍ଥନା କରିଛି ଏମାନଙ୍କପାଇଁ କିନ୍ତୁ ପାଟିଖୋଲି ନାହିଁ! ଖୋଲିଲେ କାଳେ ରକ୍ତ ଝରିଯିବ, କାରଣ ଶବ୍ଦତ କେଉଁକାଳୁ ମଲାଣି । ସାଧୁ ରକ୍ତର ଅଭିଶାପରେ ପୃଥିବୀ ନିଷ୍ଫଳା ହୋଇଯିବ ବାରବର୍ଷ । ଏଣୁ ଆଜି ଭାରି ଇଚ୍ଛା ହେଉଛି ଚୁନିପଡ଼ିଯିବାକୁ ସବୁଦିନ ପାଇଁ ।

ଦିନେ ମୁଁ ହୁଏତ ଯୋଦ୍ଧା ଥିଲି । କେବେ ଥିଲି ଠିକ୍ କହିପାରୁନାହିଁ ହୁଏତ ! କିନ୍ତୁ ନିଷ୍ପ୍ରଭ ବ୍ୟକ୍ତିତ୍ୱ ନେଇ ଏବେ ଠିଆହୋଇଥିବା ଏ ବୃହନ୍ନଳାଟିକୁ ସେ କଥା କହି କାହିଁକି ଉପହାସ କରିବାକୁ ଯିବା? ନିଆଁ ଲାଗିଯାଉ ତା'ର ଅତୀତରେ । ସେସବୁ ମିଛ । ସତ ହୋଇଥିଲେ କ'ଣ ଏଡ଼େ ବଡ଼ ବଡ଼ ଚକା ପଥର ସବୁ ଚିରୁଡ଼ା ଚିରୁଡ଼ା ହୋଇ ଲୁଣ ଝଡ଼ିଲାପରି ଝଡ଼ି-ପଡ଼ୁଥାଂତେ? ଅପୌରୁଷେୟ ବେଦଗୁଡ଼ିକ ଶ୍ରୀଫଳ ସଢ଼େଇ ପରି ଏଠିସେଠି ଗଡ଼ୁଥାଂତେ? ମୋର ଅତୀତ ନାହିଁ । ଅନ୍ତତଃ ମୋତେ ତ ସେଭଳି କିଛି ଦିଶୁନାହିଁ । ମୋର ବେପଥୁ ଅବୟବଗୁଡ଼ିକ ଯଦି ଅସ୍ତ୍ର ତୋଳି ଧରିପାରୁ-ନାହାଂତି, ଯଦି ମୋର ଦୁର୍ବଳ ଦୃଷ୍ଟିରେ ଦଶଦିଗ ଶୂନ୍ୟ ଦିଶୁଛି, ତେବେ କାହିଁକି

ଏ ତମୁଳ କୋଳାହଳ ମଝିରେ ଠିଆହୋଇ ଶଙ୍ଖ ଫୁଙ୍କୁଥିବି? ମୁଁ କଣ ଆଶା କରିବି ଯେ ବହୁ-ଅବୟବବିଶିଷ୍ଟ ଜଣେ କେହି ମଟେ ପଶୁଲାପଶୁଲି କରି ପୁଣି ଅସ୍ତ୍ର ଧରେଇଦେବ ଏବଂ ମୋ ଶଙ୍ଖ ସଂଗରେ ତା'ଶଙ୍ଖର ସ୍ୱର ମିଶେଇ ଫୁଙ୍କିବ? ତା'ଯେହେତୁ ଆଦୌ ସମ୍ଭବ ନୁହେଁ ଏବଂ ଯେତେ ଆହତ ହେଲେ ମଧ୍ୟ ବରଫ ପରି ଶୀତଳ ମୋର ମଲାମାଛ ରକ୍ତରେ ଯେହେତୁ ଆଉ ନିଆଁ ଲାଗିବ ନାହିଁ, ମୁଁ ବସ ଓହ୍ଲାଇଯିବି । ମୋର ଘର୍ମାକ୍ତ ମୁମୂର୍ଷୁ ଶରୀର ବୁଡ଼ିଯିବ ଗହୀର ପାଣି ଭିତରକୁ । ଶବ୍ଦର ସଂଗ୍ରାମ ଆଉ କରିବି ନାହିଁ; କରିପାରିବିନାହିଁ ।

ମୋର ଅବଶତାକୁ ଘେରି ଖୋଲା ଆକାଶ ପରି ଆକାଶେ ନିଷ୍ଫଳତା; କିନ୍ତୁ ଅନ୍ଧାର ରାତିରେ ଗୋଟାଏ ଧୂଳିଝଡ଼ ପାଇଁ ପାଇଁ ପିଟିଚାଲିଛି । ଏ ଅସ୍ୱାଭାବିକ ଭୂମିରେ ଏତେବେଳେ ସବୁ ସମ୍ଭବ । ସମସ୍ତେ ଅନ୍ଧ, ସମସ୍ତେ କ୍ଷୁଧାର୍ତ୍ତ । କେହି କାହା ଟଂଟି କଣା କରି ଶ୍ୱାପଦ ପରି ରକ୍ତ ପିଇଗଲେ ସେଥିରେ କିଛି ଯାଏ ଆସେ ନାହିଁ । ବିକଟ ଚିତ୍କାର କରୁଥିବା ଏବଂ ଯୂଥ ଯୂଥ ବିଚରଣ କରୁଥିବା ଏ ଶ୍ୱାପଦଙ୍କୁ ରୋକିବାର ସାମର୍ଥ୍ୟ କାହାରି ନାହିଁ । ଏ ଅରଣ୍ୟର ରାଜା ସେମାନେ । ସେ ଆଟ ଭିତରୁ କେହି ମନକଲେ ମୋର ଦ୍ରୌପଦୀକୁ ମୋ ସାମ୍ନାରେ ବିଚ୍ ବଜାରରେ ବଳାତ୍କାର କରିପାରେ । ଇଚ୍ଛା-କଲେ ମୋର ସଂଚଟିଯାକ ପୁଅର ମୁଣ୍ଡ ହାଣି ଟୋକେଇରେ ଭେଟି ଦେବାକୁ ନେଇଯାଇପାରେ । ମୋର ନିରନ୍ନ ଗର୍ଭଧାରିଣୀକୁ ଅବହେଳାରେ ଲାତ ମାରି ହତ୍ୟା କରିପାରେ ଏବଂ ଏ ସମସ୍ତ ଉପଚାର ପରେ ମୋତେ ତା'ର ସ୍ତବ ପାଠ କରିବାକୁ ବାଧ୍ୟ କରିପାରେ । ମୁଁ ତା'ନକରି ଯଦି ପ୍ରତିବାଦର ଚିତ୍କାର କଲି, ସମଗ୍ର ଅରଣ୍ୟରୁ ତା'ର ପ୍ରତିବାଦ ସହସ୍ର ହିଂସ୍ରମୁଖରେ ଶବ୍ଦାୟିତ ହେଲା, ମହାମାନ୍ୟ ଶ୍ୱାପଦ ସମ୍ରାଟ ରାୟଦେଲେ ଯେ ସମୂହ ସ୍ୱାର୍ଥ ପାଇଁ ମୋତେ ଆତ୍ମବଳି ଦେବାର ସୁଯୋଗ ମିଳିଥିଲା । ମୁଁ ସେଥିପାଇଁ କୃତଜ୍ଞ ହେବା ଉଚିତ । କୌଣସି ପ୍ରକାରେ ତାରା ଗୋଟେଇ ବଂଚିରହିବା ମୋର ଦାୟିତ୍ୱ । ବଂଚି ନ ପାରିବା ମୋର ଅଯୋଗ୍ୟତା । ମୋର ରକ୍ତ ମାଂସ ଉପରେ କିନ୍ତୁ ମାଲିକମାନଙ୍କର ସାର୍ବଭୌମ ଅଧିକାର । ମୁଁ ସେମାନଙ୍କର ଖାଦ୍ୟ ।

ମୋ ଜୀବନର ସତ୍ୟକୁ ମୁଁ ଚମତ୍କାରଭାବେ ଲୁଚେଇ ରଖିଛି । ବେଳେବେଳେ କିଛି ସମୟ ପାଇଁ ଝଡ଼ର ଆକାଶଆଡ଼େ ଅନେଇଁ ମୁଁ ଭାବିଛି କହିଦେବି

ବୋଲି, କିନ୍ତୁ କହିପାରିନାହିଁ । ଦୁର୍ବହ ଯାତନା ପାଇଁ ଭାଷା ନାହିଁ । ମୁଁ ଏ ଭୂମି ଉପରେ କେବଳ ଉତ୍ତାନ ପଡ଼ିରହିଛି । ମୋର ଅବୟବଗୁଡ଼ିକ ବିନ୍ଧ୍ୟମାଳ, ଗାଁ ଜଙ୍ଗଲ ଚାରିଆଡ଼େ ବ୍ୟାପୀଯାଇଛନ୍ତି । ମୋ ମୁଣ୍ଡ ଉପରେ ଜାଗର, ଗୁଡ଼ିଏ ବରଫର ପାହାଡ଼ । ମୋ ଅଣ୍ଟା ଉପରେ ବିନ୍ଧ୍ୟାଚଳ । ମୋ ପାଦ ଉପରେ ଶୀତଳ ସମୁଦ୍ର । ରୋଗ, ଶୋକ, କ୍ଷୁଧାର ଯାତନାରେ ଅବଶ ଓ ନୀରବ ମୋର ମୁମୂର୍ଷୁ ଅବୟବ । ମୁଁ ସ୍ୱୟଂ ଅବଶ ଓ ନୀରବ । ମୋର ଯାତନା ଭାଷାର ତୋରଣ ଭିତରେ ଅଟାଏ ନାହିଁ । ମୋ ବିକ୍ଷତ ଅଙ୍ଗ-ଗୁଡ଼ିକର କାହାରି ହେଲେ ମୁହଁ ନାହିଁ । ସେମାନଙ୍କର ନୀରବ ଯନ୍ତ୍ରଣା ହିଁ ମୋର ଦୁର୍ବହ କଷଣ ।

କଷଣ ସହିବା ଅଜଗରର ଧର୍ମ ପରି ଗୋଟାଏ ନୀରବ କ୍ରିୟା । ଜଳିବା ମଧ୍ୟ ସେଇଭଳି ଗୋଟିଏ ନୀରବ କ୍ରିୟା । ଭୋକବିକଳରେ ମୋର ଜଠର ଜଳୁଥାଏ । ମୋର ପୁତ୍ର କନ୍ୟା, ପରିବାର ଜଳୁଥାନ୍ତି । ମମତା ସୂତ୍ରରେ ସେମାନଙ୍କର ଯନ୍ତ୍ରଣା ମୋତେ ବି ଗ୍ରାସ କରେ । ମୁଁ ଚଡ଼ିହୋଇଯାଏ । ପଥର ଭାଙ୍ଗେ । ଲହୁ ତରଳାଏ । ହାତରେ ମୁଠାଏ ଲୁଣ-ଭାତର ଚାରା ନେଇ ଫେରିଲାବେଳକୁ ବାଟରେ କୁକୁର, ଶାଗୁଣା, କୁଆଗୁଡ଼ାଏ ଝାମ୍ପିନିଅନ୍ତି । ମୋର ଆହତ ପୌରୁଷର କ୍ରୋଧ ଆଉ ଏକ ଅଗ୍ନି । ସେ ବି ଜଳେ, ବେଶୀ ଜଳେ କାରଣ ବାହାରକୁ ଫିଟିଆସି କିଛି ଜାଳିପାରେ ନାହିଁ । ମୋର ଭିତରର ସେ ନିଆଁଟି ମଧ୍ୟ ଭାରି ଭୋକିଲା । ଅଦାଟାଏ ରାଗିଗଲେ କାମୁଡ଼ି ପକାଏ, କିନ୍ତୁ ମୁଁ ପାରେ ନାହିଁ । କୁକୁରକୁ ବାଡ଼େଇଦେଲେ ସେ ପ୍ରତିବାଦ କରି ଭୁକିଉଠେ, କିନ୍ତୁ ମୁଁ ପାରେ ନାହିଁ । ମୁଁ ଅନ୍ଧାରରେ ରହେ, କାଦୁଅରେ ଶୁଏ । ମିଛୁ କହି ଗୁଡ଼ିଏ ଖଟୁଆ, ବାହାପିଆ ମୋତେ ଶୋଷିନିଅନ୍ତି । ମୁଁ ସେମାନଙ୍କୁ ଜଙ୍ଘ ଉପରୁ ଟୁଙ୍କିଚାଡ଼ି ଦେଇପାରେନାହିଁ । ମୁଁ ବଡ଼ ଟାଙ୍କର ଆଶ୍ରା ପାଇବି ବୋଲି ଗୋଡ଼ାଇଯାଏ । ଗୋଡ଼ାଇଯାଏ ପଡ଼ୋଶୀ ପାଖକୁ, ପଛକୁ ନ ଚାହିଁ ଚାଲିଯାଉଥିବା ପଥୁ ପାଖକୁ, ସରକାରୀ ଗାଡ଼ିର ଧୂଳିପାଖକୁ । ଏ ସମସ୍ତ ମୋର ନୀରବ ଜ୍ୱାଳା । କହିଲେ କେତେ ବା କହିବି ଏଠି? କଣ କହିବି ଏବଂ କାହିଁକି? ବିଢ଼ମ୍ବିତ ହେଲେ ଦୀର୍ଘଶ୍ୱାସ ହିଁ କଥା କହେ ଏବଂ ନୀରବ କଥା କହେ ।

—

ମନଫୁଲଣା ହେଲେ ଗୀତ ଗାଇବାକୁ ଆପତ୍ତି ନାହିଁ । ଖୋକାଏ ହୁଏତ ସେଇଭଳି ଗାଉଛନ୍ତି । ରୋମନଗରୀ ଜଳିଗଲାବେଳେ 'ନିରୋ' କ'ଣ

ବେହେଲାରେ ପୁରୁ ବେଇ ନ ଥିଲେ କି? ବସ୍ତ୍ରାବରି ଚିତାଗ୍ନିରେ ଜଳିଯାଉଥିବା ଆତ୍ମା ପାଖରେ ଭାଷଣ ବନ୍ଦ କରନ୍ତୁ । ତଦ୍ବାରା ତା'ର ଆଉ ଅଧିକ ଅବ-ମାନନା କରନ୍ତୁ ନାହିଁ । ସକିନିଆଁରେ ପୁଅକୁ ପୋଡ଼ି ଖାଇଦେଇପାରୁଥିବା କ୍ଷୁଧାନ୍ଧ ମା'ର ବେଶରେ ସଙ୍ଗୀତ ଆସର, କୌଣସି ଅଶ୍ଲୀଳ କ୍ରିକେଟଖେଳ ଭଳି ଉଦ୍ଭଟ ଓ ଅସଙ୍ଗତ । କାବ୍ୟ କବିତାଗୁଡ଼ିକ ଏକ ତିକ୍ତ ପରିହାସ ଯଦି ଏ ସ୍ଥାଣୁପ୍ରାୟ ମୂକ ଏବଂ ଜଣେ ଜଣକ ଉପରକୁ ଟଳିପଡ଼ୁଥିବା ମୁମୂର୍ଷୁ-ମାନଙ୍କର ଆବଦ୍ଧ ଆର୍ତ୍ତନାଦକୁ ନିଜ ତାରରେ ଫୁଟାଇ ନ ପାରୁଛି ତେବେ ସେମାନଙ୍କ ଭଳି ତନି ପଡ଼ିଯିବି । ପଥର କରିନେବି ନିଜକୁ ଏବଂ ବେଳ ଆସିଲେ ନିଜେ ଝରିଯିବି ନୀରବରେ ଅନ୍ୟମାନଙ୍କ ଭଳି । କ୍ରୌଞ୍ଚଟିଏ ମରିଗଲେ ତା' ପାଇଁ ସେଭଳି ଅସାମାନ୍ୟ ଶୋକ କରିବାର ହୃଦୟ ଆଉ ନାହିଁ। ସେ ଋଷି ମଧ୍ୟ ନାହିଁ ଯାହା ଆଖିରେ ସମଗ୍ର ସୃଷ୍ଟିର 'ଆହା' ଟିକକ ସେଇ କ୍ରୌଞ୍ଚ-ବଧୂର ମାଂସପିଣ୍ଡୁଳାଟିରେ ଆଶ୍ରୟ ନେଇପାରେ । ଆମେ ସବୁ ମାଡଖାଇ ବଧିରା ହୋଇଗଲୁଣି । ମଣିଷର ମଢ଼ଭିଡରେ ଆମେ ପଡ଼ିଛୁ ; ଉଠିବାର ଉପାୟ ନାହିଁ । ପଳେଇବାକୁ ବଳ ନାହିଁ । ପଳେଇ ଲୁଚିବାକୁ ସ୍ଥାନ ନାହିଁ ଏ ସଚରାଚର ବ୍ରହ୍ମାଣ୍ଡରେ । ଗୋଟି ଗୋଟି ହୋଇ ଅବୟବ ମରିଆସିଲାଣି । ଏଭଳି ଲିଭିଆସିଲାବେଳେ କି ବା ସତ କହିବି? ବେଦ ଶୁଣିବା ଦିନଠାରୁ ଆଧୁନିକ କବିତା ଲେଖିବା ପର୍ଯ୍ୟନ୍ତ କେବେହେଲେ ସତ୍ୟ ବକ୍ତବ୍ୟ ହୋଇନାହିଁ ଏବଂ ପରମସତ୍ୟର ଅନ୍ୟ ନାମ ମୌନ ।

ଏ ପୃଥିବୀରେ ରାତ୍ରିଗୁଡ଼ିକ ମୌନ । ଗଭୀର ଗଭୀର ସମୁଦ୍ରଗୁଡ଼ିକ ମୌନ । ବନସ୍ପତି ପାହାଡ଼, ପର୍ବତ ସବୁ ମୌନ । ପୃଥିବୀ ବାହାରେ ଅସମ୍ଭବ ମୌନତା। ଅନବରତ ଲିଭିଯାଉଥିବା ଶବ୍ଦର ତରଙ୍ଗଗୁଡ଼ିକ ଅତି ସ୍ୱଳ୍ପ, ଅତିକ୍ଷୁଦ୍ର । ବୋଧ-ହୁଏ ଏ ନିର୍ବାକ ମୌନତା ହିଁ ସତ୍ୟର ଭାଷା, ବିରାଟ ବିସ୍ମୟ ଏବଂ ଅନୁଭବର ଭାଷା । ମନ-ବଚନ ଯେଉଁଠାରେ ପହଞ୍ଚି ନ ପାରି ନିବର୍ତ୍ତି ଆସନ୍ତି, ବା ଯେଉଁଠି ପହଞ୍ଚିଗଲେ ସେମାନଙ୍କର ସ୍ୱରୂପ ହଜିଯାଏ, ସେ ରାଜ୍ୟ ଅଖଣ୍ଡ ମୌନତାର ରାଜ୍ୟ । ସେଠି ମୃତ୍ୟୁର ନିରବତା । ତା'ଉପରକୁ ଆଉ ଯାହା ସତ୍ୟ ଦେଖିଥିବା କଥା ଥୋକେ କହନ୍ତି, ତା'ବି ନୀରବ । ମୃତ୍ୟୁ ତ କୌଣସି ଘଟନାବିନ୍ଦୁ ନୁହେଁ । ତାହା ଏକ ପ୍ରବାହ । ସେ କ୍ରମଶଃ ସବୁ ଉପାଦାନ-ଗୁଡ଼ିକୁ ଆଚ୍ଛନ୍ନ କରେ । ଅସହନୀୟ ଦୁର୍ବହ ବ୍ୟର୍ଥତା ଯେତେବେଳେ ଘନ କୁହୁଡ଼ି ପରି ମାଡ଼ିଆସେ ତାହା ଗୋଟାଏ ପର୍ଯ୍ୟାୟର ମୃତ୍ୟୁ । ଓଟାରି ହୋଇ ଶେଷପଳ ନିଃଶ୍ୱାସ ବିନିଯୋଗରେ ବଞ୍ଚିବାର ସଙ୍ଘର୍ଷ ସେଇଠି ନାହିଁ ।

ପ୍ରତ୍ୟେକ ସ୍ତମ୍ଭ ହୁଗୁଳି ଆସେ । ମନକେନ୍ଦ୍ରରେ ପଶିଯାଏ ମୃତ୍ୟୁର କୁହୁଡ଼ି ଆଖି ଉପରେ ଛାଇଯାଏ ଧୂସର ବର୍ଣ୍ଣର ଉଦାସ ଗୋଟିଏ ପରଳ । ଯେଉଁମାନେ ପାରିବେ ସେମାନେ ଧ୍ୱନି ଦିଅନ୍ତୁ, ନିଆଁ ହୁଳା ଲଗେଇ ଶୋଇ ଆସୁଥିବା ଜୀବନକିଂବଦନ୍ତୀଗୁଡ଼ିକୁ ଚମକାଇ ଦିଅନ୍ତୁ, ସଚେତ କରାନ୍ତୁ । ତାଙ୍କ ଜୀବନରେ ବିଡ଼ମ୍ବନା ଆହୁରି ଆସିନାହିଁ । ଯଦି ଅକସ୍ମାତ୍ ଏ ଶ୍ୱାପଦ ଅରଣ୍ୟରେ ତାଙ୍କୁ ଦୈବାତ୍ କେହି ଶୁଣୁଥାଏ, ତାହା କେବଳ କାନ ଥିଲେ ଶୁଣିବାକୁ ପଡ଼େ ବୋଲି । ଆଖିଯୋଡ଼ିକ ସେଇଭଳି ଏ ଲକ୍ଷ ଲକ୍ଷ ରୂପରଙ୍ଗକୁ ମାତ୍ର ସୋରାଏ ଦେଖନ୍ତି । ତାହା ହୋଇପାରେ ପୁଲାଏ ଘାସ କେବଳ । ସେମାନଙ୍କ ପଛୁଆଡ଼େ ଗୁଡ଼ିଏ ବ୍ୟର୍ଥ ଇନ୍ଦ୍ରଧନୁ ଝରିଯାଆନ୍ତୁ ସେଥିକୁ ତାଙ୍କର ଭ୍ରୂକ୍ଷେପ ନାହିଁ । ଏମାନେ ସମସ୍ତେ ମିଥୁନୀ-ଶ୍ୱାପଦ । ତାଙ୍କର ପ୍ରତ୍ୟେକ ଇନ୍ଦ୍ରିୟରେ ନିଷ୍ଫଳ-ମୈଥୁନ । ଏଣୁ ଏସବୁ ମିଳିଗଲେ କି ଅପରିମେୟ ବ୍ୟର୍ଥତା ସତେ! ବିରାଟ ଗୋଟାଏ ନୀରବ ଯନ୍ତ୍ରଣା ପୃଥିବୀର ଏ ମୁଣ୍ଡରୁ ସେ ମୁଣ୍ଡଯାଏ କୁହୁଳୁଥିବା ବେଳେ, ତାକୁ ଏତେ ଅଳିକ ମିଥ୍ୟାଚାରର ଭାଷାରେ କିପରି ପ୍ରକାଶ କରିହେବ? ତଦ୍ୱାରା କ'ଣ ସତ୍ୟଧର୍ମୀ ତା'ର ଆତ୍ମାକୁ ଦହନ କରିବ ନାହିଁ? —ଏଣୁ ତାକୁ ଛାଡ଼ିଦିଅ । ସେ ଏଇ ଘନୀଭୂତ କଷଣରେ ମୂକ ନିଶ୍ଚେଷ୍ଟ ହୋଇ ରହୁ । ନୀରବ ରହି ବିକୀର୍ଣ୍ଣ କରୁଥାଉ ପରମସତ୍ୟର ଭାଷା । ଯଦି କେହି ଏ ଇଙ୍ଗିତରୁ କିଛି ବୁଝିଗଲା, ତା'ର ବ୍ୟଥାତୁର ଆଖି-ଯୋଡ଼ିକରେ କିଛି ସନ୍ଧାନ ପାଇଗଲା ତ ଭଲ କଥା, ନ ପାଇଲା ତ ନାହିଁ । ସେଥିରେ ମହାଶୂନ୍ୟର ବା କଣ ଗଲା?

ଏ ଦୁର୍ମଦ ଶ୍ୱାପଦମାନଙ୍କର ଆଟକୁ ବଇଁଶୀ ବଜେଇ ଆୟତ୍ତ କରିବା ଆଶା ବୃଥା । ହଁ, ସେଇ ସେତୁବନ୍ଧର ଗୁଡୁଚିମୂଷା ନ୍ୟାୟରେ ମନର ଅରମାନ ମେଣ୍ଟାଇବାକୁ ଲୁଚିରହି କିଛି କିଛି ଲୋତକର ଗୀତ ଗାଇପାର । କାରଣ ସେଗୁଡ଼ାକ ଥରେ ଜମାଟ ବାନ୍ଧିଗଲେ ଆଉ ତରଳିବେ ନାହିଁ ତ! କିନ୍ତୁ ଏଇ ବିଶ୍ୱାସରେ ଗାଉଥାଅ ଯେ ତାହା ତୁମ ଆତ୍ମାର ନିରାଟ ସତ୍ୟ ନୁହେଁ, ତାହା ଦୂରନ୍ତ କଷଣର ସୁର ନୁହେଁ ଏବଂ କର୍ଦମାକ୍ତ ଅସଂଖ୍ୟ ବାର୍ତ୍ତା ତା'କୁ ଶୁଣିବାକୁ ବାଧ୍ୟ ନୁହଁନ୍ତି । ତୁମ ଭଳି ଆଉ ଯେ ବି ସେମିତି ଆଉ କେଉଁଠି ଗାଉଛନ୍ତି, ତାକୁ ମଧ୍ୟ ବେଳ ନାହିଁ ତୁମକୁ ଶୁଣିବାକୁ । ବ୍ୟର୍ଥତାର ମୃତ୍ୟୁ ତୁମକୁ ଆସ୍ତେ ଚାପି ନ ବସିବା ପର୍ଯ୍ୟନ୍ତ ସେମିତି ଗାଉଥାଅ, ଯଦି ଚାହୁଁଛ! କିନ୍ତୁ ଏ ପୃଥିବୀକୁ ତୁମେ ବଦଳେଇ ପାରିବ ନାହିଁ । ତୁମ ଭଳି ଚୌଦଅଟା ମିଶିଲେ ମଧ୍ୟ ନୁହେଁ । ତୁମର ସେ ସାମର୍ଥ୍ୟ ନାହିଁ । ଯାକୁ ବଦଳେଇବା-

ବାଲା ଅଲଗା । ସେ ଅନେକ ଉପରେ ଆପି ଉଦିତ ହୁଏ । ଏ ପୃଥିବୀ ଏବଂ ଅସଂଖ୍ୟ ପୃଥିବୀର ଶତାବ୍ଦୀ ଶତାବ୍ଦୀର ଯନ୍ତ୍ରଣା ଜ୍ୱାଳା ତା ଗର୍ଭରେ ସୂକ୍ଷ୍ମରୂପରେ ଜଳୁଥାଏ । ସେ ସେଇଠୁ ବର୍ଷିଯାଏ ଗଡ଼ୁଥାଏ ଆଲୋକ । କିଛି ସମୟ ଆମରି ନୀରବ ବନସ୍ପତି ଛାଇରେ ସବୁଯାକ ଶ୍ୱାପଦ ଲୁଚିରହି ହାଇ-ମାରୁଛି । ଆଲୋକର ବର୍ଷା ସରିଆସେ । ସେ ବି ଚାଲିଯାଏ । ପଛରେ ଆମ ପାଇଁ ଛାଡ଼ିଦେଇଯାଏ କିଛି ସ୍ମୃତି, କିଛି କଳ୍ପନା । ତା'ପରେ ଅରଣ୍ୟ ପୁଣି ଜାଗିଉଠେ । ଗର୍ଜିଉଠେ । ଡେଣିକି ଗାଉଥାଅ ସହସ୍ର ଆଲୋକର କାବ୍ୟ —କିଏ ଶୁଣୁଛି !

ମୋର ବିକ୍ଷତ ଅବୟବ ବିଛେଇଦେଇ ମୁଁ ଉତ୍ତାନ ପଡ଼ିରହିଛି ମୋତେ କିନ୍ତୁ କେଉଁ ଆଡ଼େ ହେଲେ ସେଇ ପ୍ରସିଦ୍ଧ ସୂନାର କାଂକୁଣିଟି ଦିଶୁନାହିଁ । ବିବର୍ଣ୍ଣ ବିସ୍ତୀର୍ଣ୍ଣ ଆକାଶରେ ଏଠିସେଠି ଯାତନାର ଶିଖା । ଖୁବ୍ ନିରେଖିଲେ ଦିଶୁଛି ଗୋଟାଏ ଅତି ବିକଟାଳ ମୁଖବିବର । ଶ୍ୱେତ-ମନ୍ଦାର ପରି ତା'ର ରକ୍ତାକ୍ତ କରାଳ ଦାନ୍ତ ! ଆଗ୍ନେୟଗିରିର ପେଟ ଭିତରୁ ଉଠିଆସୁଥିବା ନିଆଁର ଫୋଟକା ପରି ତାର ଜ୍ୱଳନ୍ତ ଜିଭ । ସେ ପ୍ରବଳ ଦାନ୍ତମାନଙ୍କର ସନ୍ଧା ଭିତରେ ଲାଖିରହିଛନ୍ତି ଅଗଣିତ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ରାଷ୍ଟ୍ର ଏବଂ ଉପମନ୍ତ୍ରୀ-ମାନେ —ଅସଂଖ୍ୟ ନେତା, ଉପନେତା, ସ୍ୱୟଂସେବକ, ଲୋକସେବକ, ବଣିକ ଓ ବଜାରୀ —ଶାସକ, ଶୋଷକ, ମହନ୍ତ ଏବଂ ଶଠ ମଠାଧୀଶ —ଏମାନେ ବୋଧହୁଏ ମୋର ପ୍ରତିପକ୍ଷର ବଳିଷ୍ଠ ଯୋଦ୍ଧା ଥିଲେ । ହୋଇପାରନ୍ତି ମୋର ସ୍ୱପକ୍ଷ ମଧ୍ୟ । ହୋଇପାରେ ସେ ଭୟଙ୍କର ମହୁଁଟା ମୋ ନିଜର । ଯାତନାର ଧୂମାଚ୍ଛନ୍ନ ଆକାଶରେ ମୋର ପ୍ରତିଫଳନ । ମୋର ବ୍ୟଥାମଥିତ ଆବେଗ ଓ ଅଭୀପ୍ସାର ରୂପ । —ସେ କିନ୍ତୁ ମୋ ଭଳି ନୀରବ ହେଲେ ମଧ୍ୟ ଭୂକମ୍ପର ଠାଣିରେ ସୂଚେଇ ଦେଉଛି, ସେ କିଏ ! ସେ କୁଆଡେ କାଳ-ଅସଂଖ୍ୟ ଗ୍ରହ ନକ୍ଷତ୍ରଖଚିତ ବିଶ୍ୱକୁ ସେ ଚୋବେଇ ଆସିଛି —ଅପ୍ରତିହତ ଚୋବେଇଯିବ ପୁଣି ହୁଏତ ମନହେଲେ ଆଉ ଗୋଟାଏ ମହୁଁରେ ପ୍ରସବ କରିଯିବ ସେଇଭଳି ଅସଂଖ୍ୟ ପୃଥିବୀ ।

ମୋର ମନେପଡ଼ୁଛି ଅନେକ ଦିନ ତଳେ ଏଭଳି କିଛି ନୀରବ କଥା ସେ ମୋତେ କହିଥିଲା । ମୋତେ ନିମିତ୍ତ କରି ସଂହାର କରିଥିଲା ଅନେକ ପୁଞ୍ଜିତ ପାପମାନଙ୍କୁ । ଏଥର କିନ୍ତୁ ମୋର ଝରେ ଝରେ ମୃତ୍ୟୁ । ମୁଁ ଆଉ ସ୍ପନ୍ଦିତ ହୋଇପାରିବି ନାହିଁ । ମୋତେ କ୍ଷମା କର, ସଖା ମୋତେ ନୀରବରେ ବଢ଼ିଯିବାକୁ ଦିଅ । ଆଜି ମୋର ଉଦାସ ପ୍ରାଣରେ ଅଜସ୍ର ଘନୀଭୂତ ନୀରବତା !

# ନୀଡ଼ାୟତନ

ନିରାଳମ୍ବ ଆକାଶରେ ପକ୍ଷୀ ବି ରହିବାକୁ ସାହସ କରେ ନାହିଁ । ଚତୁର୍ମାସ୍ୟାର କାଳର ବର୍ଷାପାତ ପୂର୍ବରୁ ସେଇ ନିଃସୀମ ଶୂନ୍ୟତା ଯେତେବେଳେ ଆହୁରି ନିରାସକ୍ତ, ଆହୁରି ନିର୍ମମ ଜଣାପଡ଼େ, ସେ ଗୋଟିଏ କାଠି କୁଟାର କୁଲାୟ ରଚନା କରି ପକାଏ । ତା' ଚାରିଆଡ଼େ ନିସ୍ପନ୍ଦ ବିଚ୍ଛେଇ ହୋଇ ପଡ଼ିଥିବା ଅକୂଳାନ ବ୍ୟାପ୍ତିରୁ ବାଡ଼ ପକେଇ କିଛି ଆବୃତ କରି ନ ଦେଲେ, ତାକୁ ହଜିଗଲା ପରି ଲାଗେ । ତା'ର ଡେଣାଯୋଡ଼ିକ ପରାସ୍ତ ହୋଇ ସୁମେଇ ପଡ଼ନ୍ତି । ଅଦୃଶ୍ୟ ପବନଟାକୁ ଆହୁଲା ମାରି କ'ଣ ଏ ଆକାଶକୁ ମାପି ହୁଏ? ପକ୍ଷୀ ଅନାଏଁ ଦଶଦିଗକୁ; ଅନାଏଁ ଅନେକ ଦୂରରେ ମୌନ ଗମ୍ଭୀର ନେଳି ପାହାଡ଼କୁ, ଆହୁରି ଦୂରରେ ଝଟକୁଥିବା ସୂର୍ଯ୍ୟକୁ । ଏମାନଙ୍କୁ ସେ ସବୁବେଳେ ହୁଏତ ଅନାଏଁ ନାହିଁ । ଡଳମଣ୍ଡ ତାରା ଖୋଜିବାରେ ତା'ର ସବୁଯାକ ଶକ୍ତି ଖର୍ଚ୍ଚ ହୋଇଯାଏ । କିନ୍ତୁ ଦିନେ ଅନେଇଁ ଦେଲାବେଳକୁ ସେମାନେ ଖୁବ୍ ଅପରିଚିତ ଓ ଅନାତ୍ମୀୟ ଜଣାପଡ଼ନ୍ତି । ତା'ର ଏତେ ଟିକିଏ ଦୀର୍ଘଶ୍ୱାସ ପରି ନିଃସଙ୍ଗ ପକ୍ଷୀପ୍ରାଣକୁ ଚାରିଆଡୁ ଘେରିଯାଏ ଅସଭବ ଶୂନ୍ୟତା । ସେ ବାହୁଡ଼ି ଆସେ ଆକାଶରୁ ଧରିତ୍ରୀକୁ—ପବନର ସ୍ୱଚ୍ଛ ସମୁଦ୍ରରୁ ବନସ୍ପତିର ନିବିଡ଼ ସବୁଜ ଅରଣ୍ୟକୁ । ତା'ର ଆଖିରେ ଆକାଶର ଅଞ୍ଜନ । ତାର ଡେଣାରେ ଓଠରେ ସେ ଶୂନ୍ୟ ଭୂମିର ନିସ୍ତବ୍ଧ ନୀରବତା, ବୁକୁ ଭିତରେ ନିଃସଙ୍ଗତାର ଥାକ ଥାକ ରୁଦ୍ଧ ଶ୍ୱାସ । ଏଭଳି ଏକାକୀ ହୋଇଗଲେ ବୋଧହୁଏ ଯେ କେହି କାମନା କରିବ ବିଭାଜିତ ହୋଇଯିବା ପାଇଁ; ଅନେକ ଦର୍ପଣରେ ନିଜେ ବହୁ–ବିମ୍ବିତ ହୋଇଯିବା ପାଇଁ । ବନସ୍ପତିର ଅରଣ୍ୟ ମମତାରେ ମର୍ମରିଉଠେ । ଖୁବ୍ ନିକଟରେ ଶାଖା ଉପଶାଖା ସେମାନଙ୍କ ସବୁଜ ବାହୁ ମେଲେଇ ତାକୁ ଆହ୍ୱାନ କରନ୍ତି । ଆହୁରି ନିକଟରେ ଆଉ ଗୋଟିଏ ପକ୍ଷୀ ତା' ଦେହର ଉଷ୍ମା ଦେବାକୁ ଲାଗିଆସେ । ଗୋଟାଏ ଆକସ୍ମିକ ମୁହୂର୍ତ୍ତରେ ଉଚ୍ଛୁଳି ଉଠେ ପକ୍ଷୀଟିର ସମଗ୍ର ଶୂନ୍ୟତା । ସେ ସ୍ପର୍ଦ୍ଧାରେ ପ୍ରତିଦ୍ୱନ୍ଦ୍ୱିତା କରେ ଆକାଶ ସାଥିରେ । ଆକାଶକୁ ବନ୍ଦି କରିପକାଏ ଗୋଟିଏ ନିବିଡ଼ ନୀଡ଼ ଭିତରେ । ତାକୁ ସେଇଠି ଶିଖାଏ ସୃଜନର ମନ୍ତ୍ର, ଦିଏ ମମତାର ଅମୃତାୟିତ ଉଷ୍ମତା । ଦୁଇଟି ପକ୍ଷୀ ପରସ୍ପରକୁ ଡେଣା ମେଲାଇ ଆବୋରି ନିଅନ୍ତି ଏବଂ ଉଭୟ ଦିଅନ୍ତି ଶୀତଳ ନିସ୍ପନ୍ଦ ନିରାୟତନ ମହାକାଶକୁ । କାଠିକୁଟାର କୁଲାୟଟି ହୋଇଯାଏ ପୂର୍ଣ୍ଣତାର ଆଦିବିନ୍ଦୁ; ସୃଷ୍ଟିର, ଜୀବନର, ମମତ୍ୱର କେନ୍ଦ୍ର । ତାହାରି ଭିତରେ ବଞ୍ଚିବା ମମତାସ୍ନିଗ୍ଧ ଏବଂ ଲୋଭନୀୟ, ମରିବା ମଧ୍ୟ

ସେହିପରି ଲୋକକବିଙ୍କ ଓ କରୁଣାର୍ଦ୍ର । ଏହା କୌଣସି ନିରାଲମ୍ବ ଆକାଶ ନୁହେଁ ଯେଉଁଠି ଜୀବନ ଏକ ଅବାଂଚର ଘଟଣା, ଏବଂ ଯେଉଁଠି ପକ୍ଷୀ ବି ବଂଚିବାକୁ ସାହସ କରେ ନାହିଁ । ନୀଡ଼ାୟତନ ବଜ୍ର ସେଇ ନିର୍ମମ ନିଃସଙ୍ଗତାର ଗୋଟିଏ ନିବିଡ଼ ସାଂଦ୍ର ପ୍ରତିବାଦ ।

ଲୁହାଛଡ଼ ଏବଂ ସିମେଣ୍ଟର ନୀଡ଼ ଭିତରୁ ମଣିଷଛୁଆଗୁଡ଼ିକ ଥଣ୍ଟ ମେଲେଇ ଆହାର ମାଗନ୍ତି । ଏଠି ମଧ୍ୟ ସେଇ ଚତୁର୍ମାସ୍ୟାର ସଙ୍କଟ । ଆଗକୁ ଦିଶି-ଯାଉଥିବା ଅବହେଳା ଦୈନ୍ୟ, ଗୋଟାଏ ସର୍ବବ୍ୟାପୀ ଅପରିଚିତ ମୌନତାର କୋହଲ । ଏତେ ଟିକିଏ ପକ୍ଷୀପ୍ରାଣ ମଣିଷଟିକୁ ଉଦ୍ୱାର୍ଦ୍ଧ କରେ । ଆତ୍ମରକ୍ଷାର ଅବଲମ୍ବନ ପାଇଁ ମାଡ଼ିସଡ଼ୁଥିବା ଆକାଶରୁ ନିଜକୁ ଘୋଡ଼େଇନେବା ପାଇଁ ଜଣେ ଜଣକୁ ସାଥୀ କରିନିଏ । ଚେଣିକି ଯେଉଁ ଆଡ଼େ ଅନେଇଲେ ମମତାର ପକ୍ଷପୁଟ ଆବୋରି ରହିଥାଏ । ଚଢ଼େଇ ବସାପରି କୋମଳ ସ୍ନିଗ୍ଧ ଦୁଇଟି ଆଖି ସବୁବେଳେ ଆୟତନ ରକ୍ଷାକରି ରହିଥାଏ । ସେ ଭିତରକୁ ଆକାଶ କିମ୍ବା ତାର ଶୀତଳ ମୌନତା ଅନୁପ୍ରବେଶ କରିପାରେ ନାହିଁ । ଅନେକ ଉଡ଼ାଘରର ଶାଖାରେ ଶାଖାରେ ଉଡ଼ିବୁଲିଲା ପରେ ଦିନେ ଉଭୟେ ମିଶି ଅବସନ୍ନ ବୋଧ କରନ୍ତି । ଉଭୟଙ୍କୁ ଘେରିଯାଏ ଶୂନ୍ୟତା । ଗୁଡ଼ିଏ ଯାଯାବର ଶିଶୁ ଓ ବର୍ଷିଷ୍ଠ ମଣିଷଛୁଆଂକ ମୁହଁରେ ନୀରବ ପ୍ରଶ୍ନରେଖା ଉକୁଟିଉଠେ– ଆମେ କ'ଣ ଏ ଆକାଶରେ ବଂଚିପାରିବୁ ଏଠି ସରା ପକ୍ଷୀ ବି ବଂଚିବାକୁ ସାହସ କରେ ନାହିଁ ! ମଣିଷଟି ଅନାଏଁ ନିଜର ସାଥୀକୁ, ଅନାଏଁ ନୀଡ଼ ପରି ତାର ସେ ଦୁଇଟି ଉଜ୍ଜ୍ୱଳ ଆଖି ଚାରିଆଡ଼େ କେଉଟର ସରୁ ସରୁ ଜାଲକୁ । ନିଜ କାନମୂଳରେ ଲୁଚି ପାରୁ ନ ଥିବା ଧଳା ଧଳା କଟୁଆଳଗୁଡ଼ିକୁ !! ତା'ର ଚହ୍ଲାଇ ଚହ୍ଲାଇ ମନେପଡ଼ିଯାଏ ଯେ ଆସନ୍ତା କାର୍ତ୍ତିକକୁ ସଇଁତାଳିଶଟି ଶରତ୍ ସରିଯିବ । ସରସ ପବନ ପରି କେଉଁ ସଂଧ୍ୟାବାଟେ ସିର୍ ସିର୍ ହୋଇ ଆକାଶ ପଶିଆସେ । ଚାରିଆଡ଼େ ଲୁହାଛଡ଼ ଓ ସିମେଣ୍ଟର କାନ୍ଥ ଟେକି ନ ଦେଲେ ଆଉ ରକ୍ଷା ନାହିଁ । ଏଇ ସମୟରେ ଅସହାୟ ପ୍ରୌଢ଼-ଗୁଡ଼ିକ ଆତୁର ହୋଇ ଇଟା ଭାଟିରୁ ଯୋଗାଣ ଗୋଦାମ, କରଡ଼ ବିରାଣୀଠାରୁ ମିସ୍ତ୍ରୀଘରକୁ ଧାଆଁନ୍ତି । ଆଜି ମୂଳଦୁଆ, କାଲି ଚଉକାଠ, ଆଉ ଦିନେ ଛାତ । ...କପାଳରେ ଗାର ଗାର ହୋଇ ଉଦ୍‌ବେଗର ଛାଇ ବୋଝେଇ ହୋଇଯାଏ ଯୌବନର ଜାମା ସଟା ଢିଲା ହୋଇ ଓହଳି ପଡ଼ନ୍ତି । ଧାର ଧାର ଝାଳର ସ୍ରୋତରେ ବୟସ ବୋହିଯାଏ ସିଟରାସ୍ତା ଉପରକୁ । ସବୁ ନୀଡ଼ ନିର୍ମାଣ ସରିଆସିଲା ବେଳକୁ ଚତୁର୍ମାସ୍ୟାର ଅନ୍ଧାର ପ୍ରାୟ ନଇଁଆସିଥାଏ । ସିଲାଏ

ଯେ ଯାହାର କୋଣ ଆବୋରି ରହିଯାନ୍ତି । କବାଟ ଝରକା ବନ୍ଦ କରିଦେଲେ ନୀଡ଼ଟି ବି ବେଶ୍ ଉଷ୍ମ ଜଣାପଡ଼େ । ଆପଣାପଣରେ ମତ ପର୍ଯ୍ୟନ୍ତ ଭରପୂର ଓ କୋଳାହଳମୟ । ବାହାରେ ବର୍ଷା ବତାସୀ କୁହାଟୁଥିବାର ଶବ୍ଦ ଶୁଭେ । କ୍ଳାନ୍ତ ମଣିଷଟି ବିଜେତାର ହସ ସାଙ୍ଗରେ କିଛି ତା ଶୋଷିନିଏ । ତା'ପରେ ସବୁଠାରୁ ବଡ଼ ପ୍ରକୋଷ୍ଠଟିରେ . ଶୋଇଯାଏ । ପ୍ରୟୋଜନ ବେଳେ ତା'ର ସମସ୍ତ ଆତ୍ମୀୟ ସେଇଠି ଜମାଟ ବାନ୍ଧି ତାକୁ ଘେରିଯିବେ ବୋଲି ତାର ଅଗାଧ ବିଶ୍ୱାସ ଆସିଯାଏ । ଏଇ ନୀଡ଼ ତା'ର । ଏ କାନ୍ଥଗୁଡ଼ିକ ସେ ନିଜେ ଠିଆ ରହି ଗଢ଼ିଛି । ଏଇ ଘରେ ଉଠୁଛି ଧୂଆଁ, ଏଇଠି ମଣିଷଙ୍କର ଲୁଣିଆ ଆଇଁଷିଆ ଗନ୍ଧ । ଏଇଠି ରୋଗ, ଶୋକ, ପ୍ରଣୟ, କ୍ଷୁଧା ତୃଷାର ଜ୍ୱାଳା, ଜୀବନର ସଂଘର୍ଷ ଓ କୋଳାହଳ । ଏଠି ପୁଣି ପରିଶେଷରେ, ଏଇ ଆତ୍ମୀୟ ପରି ଠିଆରହିଥିବା କାନ୍ଥଗୁଡ଼ିକର ବେଢ଼ା ଭିତରେ ମୃତ୍ୟୁ ଏବଂ ଚାରିଆଡ଼େ ଏ ରୋରୁଦ୍ୟମାନ ପ୍ରକୋଷ୍ଠ । କିନ୍ତୁ ବାହାରେ ସେ ବିସ୍ତୀର୍ଣ୍ଣ ଆକାଶ, ସେ ହାଉ ହାଉ ଜୁଆରିଆ ପବନ ଏବଂ ସେ ପରିଚିତ ଅନାତ୍ମୀୟ ପୃଥିବୀ... ତାକୁ ନେଇ କଣ ବଞ୍ଚିହୁଏ ନା ମରିହୁଏ? ଏଇ ନୀଡ଼ଟି ଭିତରେ ସବୁ ଜ୍ୱାଳାର ସ୍ୱାଦ ଅଛି, ସବୁ ଯନ୍ତ୍ରଣାର ମୂଲ୍ୟ ଅଛି, ମରିବାରେ ମଧ୍ୟ ଆତ୍ମୀୟତାର ସମ୍ଭାବନା ଅଛି । ସେ ଶୂନ୍ୟଭୂମିରେ କିନ୍ତୁ ବଞ୍ଚିବା ଯେମିତି ଦୁର୍ବିସହ, ମରିବା ତଦପେକ୍ଷା ଆହୁରି ଦୁର୍ବିସହ, ଆହୁରି ଭୟାବହ । ମୋର ବୋଲି ଆଙ୍କୁଡ଼ାଟିଏ ଲଟେଇଦେବାକୁ ସେଇଠି ସାନ୍ଦ ନାହିଁ । ଆଉଜିପଡ଼ିବାକୁ କାନ୍ଥ ନାହିଁ ତା'ତଳେ ଲୁଚି ପଶିଯିବାକୁ ଛାତ ନାହିଁ । ତା'ର ଦଶଦିଗ ମେଲା । ଯେଉଁଆଡେ ଦଉଡ଼ିଲେ ଅଳକୂଳ ନାହିଁ । ଉସ୍, ସେଠି ମଣିଷ କେମିତି ରହିବ? ସେଠି ସରା ପକ୍ଷୀ ବି ସାହସ କରେ ନାହିଁ ବଞ୍ଚିବାକୁ!

ଜୀବନରୁ ଆକାଶକୁ ବାଦ୍ ଦେବାକୁ ସେ ଉପରକୁ ଅନାଏଁ ନାହିଁ । ନୀଡ଼ାୟତନ ଭିତରେ ସେ ନିଜେ ହିଁ ରାଜତ୍ୱ କରେ । ସାଟେରିଗୁଡ଼ିକ ଶଙ୍ଖକୀଟର ଖୋଳପା ପରି ତାକୁ ଆବୋରି ରହନ୍ତି । ନିଜର ଶିରା-ଉପଶିରାରୁ ରକ୍ତ ଯୋଗାଇ ସେ ଖୋଳପାଟିକୁ ଦୃଢ଼ କରୁଥାଏ, ଚିକ୍କଣ ଓ ସୁନ୍ଦର କରୁଥାଏ । ଶାବକ ଗୁଡ଼ିକୁ ଚାରା ଯୋଗାଇବା ବେଳେ ସେ ଅନୁଭବ କରେ ଯେ, ନୀଡ଼ ଭିତରେ ଆହୁରି କୋଟିଏ ଘନିଷ୍ଠ ପରିସର ଏମାନେ ଗଢ଼ୁଛନ୍ତି । ଦିନେ କିନ୍ତୁ ହଠାତ୍ ସେ ଆବିଷ୍କାର କରେ ଯେ ଜଣେ ସେ ଭିତରୁ ତା'ରି ଲଳି ଅନେଇ ରହିଛି । ତା'ଡେଣାରେ ଆକାଶର ସ୍ପର୍ଶ । ସେ ଏଣିକି ଉଡ଼ିଯିବ

ଶାଖାରୁ ଶାଖାକୁ । ଏ ନୀଡ଼ାୟତନରେ ସେ ଆଉ ରହିପାରିବ ନାହିଁ । ପାଚିଲା ଫଳ ପରି ସେ ଖସିପଡ଼ିବ । ନୂତନ ଭୂମିରେ ନୂତନ ଅଙ୍କୁର ପାଇଁ ତା' ଭିତରେ ଉତ୍କଣ୍ଠା ସୃଷ୍ଟି ହେଲାଣି । ସେ ଚାଲିଯାଏ ଏବଂ ତାହାରି ସ୍ଥାନ ଆବୋରି ବସେ ସମପରିମିତ ଆକାଶ । ଉଦ୍‌ଭିଦ ପରି ଆକାଶ ବି ବଢ଼େ । ଶାଖା ମେଲେଇ ସମସ୍ତ ନୀଡ଼ର ଆୟତନକୁ ସେ କ୍ରମଶଃ ଆଚ୍ଛନ୍ନ କରେ । ପରିଶେଷରେ ପ୍ରାଚୀନ ଦୁଇଟି ପକ୍ଷୀ ପରସ୍ପରକୁ ଅନେଇ ରହନ୍ତି, ନୀରବରେ ଅନେଇ ରହନ୍ତି ସେଇ ଆକାଶକୁ । ତା'ପରେ ନୀଡ଼ ପରି କୋମଳ ସ୍ନିଗ୍ଧ ସେ ଦୁଇଟି ଆଖି ମଧ୍ୟ ବୁଜିହୋଇଯାଏ । ଅବଶିଷ୍ଟ ପକ୍ଷୀଟି ଆଉ ଡେଣା ମେଲେଇ ପାରେ ନାହିଁ । ତା'ଚାରିଆଡ଼େ ଆକାଶ—ନୀରବ, ନିସ୍ପନ୍ଦ, ତୁଷାର-କଳ୍ପ ! ସେ ସେଇ କା'ଅଗୁଡ଼ିକୁ ଆତୁର ହୋଇ ଦରାଡି ପକାଏ ଆଉଁସି ପକାଏ ସ୍ୱଜନବର୍ଗଙ୍କୁ ! ସମସ୍ତେ ଜଣାପଡ଼ନ୍ତି ସେଇ ଆକାଶର ହିଁ ପ୍ରତିନିଧି, ତା'ର ନିରାୟତନ ଉପନିବେଶ ସେ ଯାହାକୁ ଭୟରେ ଚାହିଁନଥିଲା, ତାକୁ ହିଁ ଶେଷରେ ସିଧାସଳଖ ଅନାଏଁ ଏବଂ ଅଗତ୍ୟା ଡେଇଁପଡ଼େ ତା'ର ନିରବଚ୍ଛିନ୍ନ ଶୂନ୍ୟତା ଭିତରକୁ । ପ୍ରକୋଷ୍ଠଟି ରୋରୁଦ୍ୟମାନ ହୁଏ । ସ୍ୱଜନ ବାନ୍ଧବ ଲୋତକାପ୍ଳୁତ ହୁଅନ୍ତି । କିନ୍ତୁ ସେ ରୋଦନରେ କେତେ ଅନ୍ୟ-ମନସ୍କତା—ସେ ଲୋତକ ବିନ୍ଦୁଗୁଡ଼ିକ କେତେ ଶିଷ୍ଟାଚାରୀ ଏବଂ ସାମାଜିକ ପ୍ରତ୍ୟେକ ନୀଡ଼ାୟତନକୁ ଏହିଭଳି ଅନର୍ଗଳ ଆକାଶ ହିଁ ଅଧିକାର କରିନିଏ । ତାକୁ ବାଦ୍ ଦେଇ ହୁଏ ନାହିଁ, ତାକୁ ବନ୍ଦୀ ବି କରି ହୁଏ ନାହିଁ । ତାକୁ କିନ୍ତୁ ସମ୍ପୂର୍ଣ୍ଣ ଗ୍ରହଣ କରିନେଲେ ଆୟତନ ଭୁଷୁଡ଼ି ପଡ଼େ, ଜୀବନ ମରଣର ସକଳ ସମ୍ଭାବନା ଲୋପ ପାଇଯାଏ । ପରିବାରର ଆୟତନ ଭିତରେ ପ୍ରେମ, ବାତ୍ସଲ୍ୟ, ଭକ୍ତି, ସମ୍ମାନ, ଶ୍ରଦ୍ଧା ଯେପରି ପରସ୍ପର ଜାଣିବାକୁ, ଗ୍ରହଣ କରିବାକୁ ଉପାଦାନ ଯୋଗେଇ ଦିଅନ୍ତି, ପରିବେଶ ସୃଷ୍ଟି କରିଦିଅନ୍ତି, ସେଇଭଳି ବାକି ସବୁ ମଧ୍ୟ ଗୋଟାଏ ଗୋଟାଏ ଆୟତନକୁ ନେଇ ସମ୍ଭବ ହୁଏ । ସମ୍ପୂର୍ଣ୍ଣ ଅସମ୍ପୃକ୍ତ ଗୁଡ଼ିଏ ମଣିଷ ସହାବସ୍ଥାନ କରନ୍ତି । କିନ୍ତୁ କାଳେ ସେମାନେ ଆକାଶଧର୍ମୀ ହୋଇଯିବେ, ସେଇଭଳି ନିସ୍ପନ୍ଦ, ଅପରିଚିତ ହୋଇଯିବେ, ଏଇ ଭୟରେ ଆମେ ନୀତି-ନିୟମ, ଆଚାର-ବ୍ୟବହାରକୁ ନେଇ ଗୋଟିଏ ବେଶ୍ ପ୍ରଶସ୍ତ ନୀଡ଼ ରଚନା କରୁ । ତାକୁ କହୁ ସମାଜ । ନୀଡ଼ର ଆୟତନ ଯେତେ ବଢ଼ୁଥାଏ, ଆକାଶର ପରିସର ସେତିକି ବଢ଼ୁଥାଏ । ଏଣୁ ଯେଉଁମାନେ କହନ୍ତି ଯେ ସମସ୍ତ ବସୁଧାରେ ଗୋଟିଏ ମାତ୍ର କୁଟୁମ୍ବ ବାସ କରନ୍ତି, ସେମାନେ ଦେଶ ଦେଶ ଭିତରେ, ଜାତି ଜାତି ଭିତରେ ଗୁଡ଼ିଏ ଫାଙ୍କା ଆକାଶକୁ ସ୍ୱୀକାର

କରିନିଅଛି । ଏ କୁଟୁମ୍ବଟିକୁ ବଳାତ୍କାର ଏକାଠି କରିବା ସଂଭବ ନୁହେଁ । ତା'ର ଉପାଦାନରେ ଶହେରେ ଅନେଶ୍ୱତ ଭାଗ ଆକାଶ—ଅସଂପର୍କର ଆକାଶ !

ସେ ଯେଉଁ ପ୍ରୌଢ଼ଟି ସରକାରୀ ବଗିଚାର ଅପରିଚିତ ଗଛମୂଳେ ପଡ଼ିଥିବା ଲୁହା ବେଞ୍ଚଟି ଉପରେ ପ୍ରତିଦିନ ସଂଧ୍ୟାରେ ଆସି ବସେ ଏବଂ ତା'ଭଳି ଆଉ ଜଣେ ସେଇ ସମୟରେ ସେଇଠି ତା'ସାଂଗେ ଆସି ମିଶେ—ସେ ଦୁହେଁ ସହୃଦୟତାର ଗୋଟିଏ ନୀଡ଼ାୟତନ ଭିତରେ ଘୁମୁନ୍ତି । ଦିନେ ହୁଏତ ସେଥିରୁ ଗୋଟିଏ ଝଡ଼ିଯାଏ ବା ଉଡ଼ିଯାଏ ଏବଂ ସରକାରୀ ବଗିଚାର ଅପରିଚିତ ଗଛମୂଳେ ପଡ଼ିଥିବା ଲୁହା ବେଞ୍ଚଟି ସଂଧ୍ୟାବେଳେ ସେମିତି ଖାଲି ପଡ଼ିରହିଯାଏ । ଏଇଭଳି ସଂଗୀତ ଆସର, ପାଠଚକ୍ର, ସାହିତ୍ୟସଂସଦ, କ୍ଲବ୍, ଅନୁଷ୍ଠାନ ଗୋଟିଏ ଗୋଟିଏ ନୀଡ଼ାୟତନ । ଗୁଡ଼ିଏ ସ୍ୱାଧୀନ ପରିସରର ଚଢ଼େଇ କିଛି ସମୟ ପାଇଁ ଗୋଟିଏ ସର୍ବସାଧାରଣ ଚରାଭୂଇଁରେ ଓହ୍ଲାଇ-ଯାଂତି । ଗୁଡ଼ିଏ ମଣିଷ ସେମାନଙ୍କର ବିଭିନ୍ନ ଅଭିରୁଚିର ବିସମତା ଭିତରେ ସୂତାଖିଅ ପରି ଗୋଟିଏ ଗରିଷ୍ଠ ସାଧାରଣ ଗୁଣନୀୟକ ଆବିଷ୍କାର କରନ୍ତି । ଅନୁଷ୍ଠାନ ଗଢ଼ିଉଠେ । ଗୋଷ୍ଠୀ ପାଇଁ ଗୋଟିଏ ସ୍ୱତନ୍ତ୍ର ନୀଡ଼ାୟତନ ଗଢ଼ିଉଠେ । ଏଭଳି ଏକାଠି ମିଶି କୋଳାହଳ ନକଲେ ଚାରିଆଡ଼େ ବ୍ୟାପିଥିବା ସେଇ ନିଝୁମ ନୀଳ ଅରଣ୍ୟର ନିସ୍ତବ୍ଧତା ସେମାନଙ୍କୁ ଘୋଡ଼େଇପକେଇବ । ଏମିତି ନୀଡ଼ରୁ ନୀଡ଼କୁ ଡେଇଁ ବିଭିନ୍ନ ଆୟତନର ବାଡ଼ ଉପରକୁ ଆଉଜି ନ ଗଲେ ସେ ଆକାଶିଆ ରାତ୍ରି ଶୋଷିନେବ ତା– ନୀଡ଼ାୟତନ ଗର୍ଭକୁ । ସଂପୂର୍ଣ୍ଣ ଏକୁଟିଆ ହୋଇ ମଣିଷ ଆକାଶକୁ ଅନେଇଁ ପାରେ ନାହିଁ । ଦିଗଂବର ମହାଶୂନ୍ୟର ନିଶ୍ଚଳ ସମାଧି । ଅସ୍ତିନାସ୍ତିର ସେ ଚିରବିସ୍ମୟ, ତା'ର ଅନନ୍ତ ବ୍ୟାପକତା ତାକୁ ନିଶ୍ଚିହ୍ନ କରିଦିଏ; ସେ ହଜିଯାଏ । ତା'ପରେ ପୁଣି କେତେ-ବେଳେ ସେ ନିଜକୁ ନିଜେ ଆବିଷ୍କାର କରି ଆଶ୍ୱସ୍ତ ହୁଏ । ଅତି ପ୍ରିୟ ଜଣା ପଡ଼େ ତା'ର ସେ ଚମତ୍କାର ଘନିଷ୍ଠତମ ଆୟତନଟି । ସ୍ୱେଦ-ଶୋଣିତର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକର ଯାତନା, ସେମାନଙ୍କର ଦୁରନ୍ତ ଯାତନା ଓ ସମସ୍ତ ଦୁଃଖ ସୁଖ ଜଣାପଡ଼େ ଅତି ପ୍ରିୟ, ଅତି ଆପଣାର । ଏଣୁ ଗୋଟିଏ ପଳାତକ ଭୟାର୍ତ୍ତ ଶିଶୁ ପରି ସେ ସଂସାରର ପରିଚିତ କୋଟର ଭିତରେ ପଶିଯାଏ—ଆକାଶର ଭୟରେ, ଆକାଶଠାରୁ ଦୂରେଇଯିବା ପାଇଁ ଏବଂ ପରମ-ଶୂନ୍ୟତା ସହିତ ଜୀବନର ଛୋଟ ଛୋଟ ଆୟତନଗୁଡ଼ିକର ଓ ସେମାନଙ୍କ ମମତା ମାୟାର ରାଜିନାମା ହୋଇପାରେ ନାହିଁ ବୋଲି ।

ଏତେ ଅପରିମେୟ ଆକାଶ ସତ୍ତ୍ୱେ କିଛି ଅନାକାଶ ବସ୍ତୁ କେଉଁଠି ନିଶ୍ଚୟ ଅଛି ଯାହା ଶୂନ୍ୟତାର ଅପକ୍ଷପାତୀ । ନଚେତ୍ ଏତେ ଦ୍ୱନ୍ଦ୍ୱ, ଏତେ ବିରୋଧ ସମ୍ଭବ ହୁଅନ୍ତା କେମିତି? ଆନାକାଶରେ ଆୟତନ ଅଛି, ଗତି ଅଛି, ଆର୍ଦ୍ରତା ଅଛି, ଉତ୍ତାପ ଅଛି । ଗତିରୁ ସଂପର୍କ ଏବଂ ସଂପର୍କରୁ ବହୁବିଧ ରସ ଓ ଉଷ୍ଣତା । ଏଣୁ ପ୍ରାଣୀମାତ୍ରେ ଅନାକାଶର ଆଶ୍ରୟ ନନେଲେ ବଂଚିବା ଅସମ୍ଭବ । ସେଇଠି ସେ ପାଏ ତା'ର ସନିଶ୍ଚିତ ନୀଡ଼ାୟତନ; ବନ୍ଧୁ କୁଟୁମ୍ବୀ ସ୍ୱଜନବର୍ଗଙ୍କର ନିବିଡ଼ ଉଷ୍ମତା । ତାହାରି ଭିତରେ ତା'ର ଆରାଧ୍ୟ ଦେବତା ରୂପ ପରିଗ୍ରହ କରନ୍ତି । ତା'ର ଚତୁଃର୍ଦ୍ଦିଗ ଦର୍ଶନ ଭାଷା ଆୟତନକୁ ଅବତରଣ କରେ । ଜୀବନବଣିଜରେ ସେ ପାଏ ଚତୁର୍ବର୍ଗ—ମନୋରମା ପତ୍ନୀ, ଗୁଣବନ୍ତ ପୁତ୍ର, ଧନ, ଧାନ୍ୟ, ଧରା, ଧର୍ମ ତାଙ୍କୁ ମହିମା-ମଣ୍ଡିତ କରନ୍ତି । ପ୍ରାଣୋପମ ବନ୍ଧୁ ଉଦାର ସ୍ନେହ ଆଦରରେ ଅଭିଷିକ୍ତ କରନ୍ତି । ମିଳେ ସାମ୍ୟ, ମୈତ୍ରୀ ଓ କରୁଣା ; ମିଳେ ଯଶୋଦାର ସୌଭାଗ୍ୟ ଓ ଦଶରଥର ମର୍ଯ୍ୟାଦା । ସେ ଦିଏ ଅକୁଣ୍ଠ ପ୍ରେମ, ବାତ୍ସଲ୍ୟ ଓ କୃତଜ୍ଞତା । ଏ ସମସ୍ତ ଦାନ-ପ୍ରତିଦାନର ଐଶ୍ୱର୍ଯ୍ୟକୁ ଚଳାଦଂଡରେ ସମନମିତ କରନ୍ତି ଦୁଃଖ, ଦୈନ୍ୟ, ରୋଗ, ଶୋକ, ସନ୍ତାପ, ଦ୍ୱେଷ, ଘୃଣା, ବିଦ୍ରୋହ ଏବଂ ନିଷ୍କରୁଣ ଜିଘାଂସା । ଏ ସମସ୍ତକୁ ନେଇ ତ' ଜୀବନ! ନୀଡ଼ାୟତନର ପ୍ରକୃତ ମୂଲ୍ୟ ତ' ଏସବୁ! କେତେ ପ୍ରିୟ, କେତେ ଆପଣାର!

ସ୍ୱଭାବତଃ ସମୁଦ୍ର ଲୀଳାୟିତ ହେଲେ ଲହରୀ ଫେନାୟିତ ହୁଏ ଏବଂ ଶିକର-ବିନ୍ଦୁଗୁଡ଼ିକ କିଛି କାଳ ପାଇଁ ସମୁଦ୍ରରୁ ବିଚ୍ଛିନ୍ନ ହୁଅନ୍ତି । ଯଦି ଆକାଶ ତା'ର ନିଷ୍କମ୍ପ ସ୍ଥିତିରେ ରହି ଏ ଲୀଳାୟିତ ଅନାକାଶକୁ ସର୍ଜନା କରେ ଏବଂ ଏ ସମସ୍ତର ନିମିତ୍ତ ଓ ଉପାଦାନ କାରଣରୂପେ ଅଦ୍ଭୁତଭାବରେ ସେଇ ନିର୍ଗୁଣ ଶୂନ୍ୟାକାଶ ହିଁ ବିଦ୍ୟମାନ—ପଣ୍ଡିତବର୍ଗଙ୍କୁ ଅନୁରୋଧ, ସେମାନେ ଏ ଭୟଙ୍କର ସତ୍ୟକୁ ପ୍ରକାଶ ନ କରନ୍ତୁ । ନିରନ୍ତର ଉଡୁଥିବା ପକ୍ଷୀଟିଏ ନୀଡ଼ାୟତନକୁ ଛାଡ଼ିବୁଝି ଧରି ଆମେ କିଛି ଆଶ୍ୱସ୍ତି ପାଉଛୁ । ପ୍ରତି ମୁହୂର୍ତ୍ତରେ ଆକାଶରେ ନିମଗ୍ନ ହୋଇ ଚାଲିଛି ଜୀବନର ସ୍ପନ୍ଦନ । ନିର୍ଲିପ୍ତ, ନିରାସକ୍ତ ଆକାଶ ତା'ର କେବଳ ମାତ୍ର ସ୍ଥିତିରେ ଏ ସମସ୍ତ କୋଳାହଳକୁ ନୀରବ କରିଚାଲିଛି କିନ୍ତୁ ସେଇ ନିସ୍ତରଙ୍ଗ ଶୀତଳ-ସମାଧି, ସେଇ ଶୂନ୍ୟଗର୍ଭ ଶୂନ୍ୟାୟତନ ଅପେକ୍ଷା ଜୀବନର ଏ ଧୂଳିଘର, ତା'ର ଭଙ୍ଗାଗଢ଼ା, ଜୀବନ-ଭିତ୍ତିକ ତା'ର ଆନନ୍ଦ-ବିଷାଦ, ଏକାନ୍ତ କାମ୍ୟ । xxx ଏ ପକ୍ଷୀପୁଟିକୁ ବଂଚିବାକୁ ଦିଅ । ପାଣି ଉପରେ ଘନ ବରଫର ଭେଳା ପରି ଭାସିଯିବାକୁ ଦିଅ! ସବୁ ଆୟତନକୁ ଆକାଶରେ ବୁଡ଼େଇଦେଲେ, ଭାସମାନ ମେଘଖଣ୍ଡରୁ ଇନ୍ଦ୍ରଧନୁଟି ଲିଭିଯିବ

ଏ ଉସ୍ୱାର୍ଥ ଯାଯାବର ପକ୍ଷୀଟି ଏ ନ୍ୟୂନତମ ଅନୁମତି ବଦଳରେ ପ୍ରତିଶ୍ରୁତି ଦେଉଛି ଯେ ଆକାଶର ଅପ୍ରତିହତ ସାମ୍ରାଜ୍ୟରେ ଯେଉଁ ଟିକକ ମାଧ୍ୟାବଲମ୍ବିତ କରି ସେ ନିଜର ନୀଡ଼ ରଚନା କରିଛି, ତାହା ଦିନେ ସେ ମାଲିକଙ୍କୁ ସମର୍ପି ଦେବ । ଫଟ ମେଲା କରି ପଞ୍ଜରେ ପଡିରହିଯିବ ମୁଠାଏ ହାଡ଼ ଓ କିଛି ମୃତ୍ତିକା । ସେ ନତଜାନୁ ହୋଇ ସ୍ୱୀକାର କରୁଛି ଯେ ଏ ସମସ୍ତ ମହାମହିମ ଆକାଶଙ୍କର ସମ୍ପତ୍ତି; ଆଦିଗନ୍ତ ଏ ସମସ୍ତ ଭୂମି ଆକାଶଙ୍କର ହିଁ ସାମ୍ରାଜ୍ୟ! କିନ୍ତୁ ଆପାତତଃ ପକ୍ଷୀଟିକୁ ତା'ର ନୀଡ଼ାୟତନରେ ବଞ୍ଚିବାକୁ ଦିଅ । ତାକୁ କହ ନାହିଁ ସେ ସ୍ୱୟଂ ସେଇ ଆକାଶ ବୋଲି ।



